# ମହାତ୍ମା ଗାନ୍ଧୀ

ଆମ ଭାରତବର୍ଷ ଗୋଟିଏ ବଡ଼ ଦେଶ । ଉତ୍ତରରେ ହିମାଳୟ ପର୍ବତ—ସତେ ଯେପରିକି ବରଫ-ପଗଡ଼ି ବାନ୍ଧି ଠିଆହୋଇଛି । ଦକ୍ଷିଣରେ ଭାରତ-ମହାସାଗର; ସିଏ ଯେପରିକି ଭାରତମାତାର ପାଦ ଧୋଇ ଦେଉଛି । ଆମ ଦେଶରେ ଭରା ଫସଲ ହେଉଥିଲା; ବଣିଜ-ବେପାର କରିବାକୁ ଦରିଆ ପାରହୋଇ ଆମେ ଚାଲିଯାଉଥିଲୁ । ପୃଥିବୀର କେତେ ଦେଶ ଭାରତବର୍ଷରୁ ଧାନ, ଗହମ ନେଇ ଚାଲିଯାଉଥିଲେ ।




[ ଆମ ଦେଶ ତୁଳନାରେ ବିଲାତ କେଡ଼େ ଛୋଟ ]

ଏହି ଦେଶର ହଜାର ହଜାର ମାଇଲ ପଶ୍ଚିମରେ ବିଲାତ ବୋଲି ଗୋଟିଏ ଛୋଟ ଦେଶ ଅଛି । ଦରିଆ ଭିତରେ ଟାପୁଟିଏ ଭଳି । ସେହିଭଳି ଗୁଡ଼ାଏ ଦେଶ ଆମ ଭାରତ ଭିତରେ ଖାପିଯିବ । ସେଠାରେ ବେଶି ଫସଲ ହୁଏ ନାହିଁ । ଯେତିକି ହୁଏ, ସେଥିରେ ଅଳ୍ପ କେତେ ମାସ ସେମାନଙ୍କର ଗୁଜୁରାଣ ମେଣ୍ଟେ । ବିଲାତର ଲୋକଙ୍କୁ ଇଂରେଜ ବୋଲି କୁହନ୍ତି ।

ଜାହାଜ ଖଣ୍ଡେ, ଖଣ୍ଡେ ଧରି ଇଂରେଜମାନେ ଏ ଦେଶରୁ ସେ ଦେଶକୁ ଯାଆନ୍ତି କଷ୍ଟ କଷ୍ଟ ଖାଇବା ଜିନିଷ ଆଣି ନିଜ ପିଲାକବିଲାଙ୍କୁ ବଞ୍ଚାଇବା ପାଇଁ । ଆମ ଦେଶରେ ଆସି ପହଞ୍ଚିଲେ; ଆମ ଗହମ ଗୃଉଲ ଦେଖି

ସେମାନଙ୍କର ଭାରି ଲୋଭ ହେଲା । 'ଭାରତରେ ସୁନା ଫଳେ' ବୋଲି ସିନା ଶୁଣିଥିଲେ—ଏଠି ଆସି ସତକୁ ସତ ଆଖିରେ ଦେଖିଲେ । ପାଚିଲା ଧାନ-କ୍ଷେତ, ପାଚିଲା ଗହମ କ୍ଷେତ ସେମାନଙ୍କ ଆଖିକୁ ଝଲସାଇ ଦେଲା ।

ଦେଖିଲେ କ'ଣ ହେବ ! ବିଲାତରୁ କି ଜିନଷ ଆଣି ଆମ ଦେଶରେ ବିକିବେ ଯେ ଆମ ଦେଶରୁ ଗହମ ଗୁଣ୍ଡାଇ ନେବେ ? ସେଇ ଚିନ୍ତାରେ ସେମାନେ ପଡ଼ିଲେ । ଆମ ଦେଶର କାରିଗରମାନେ ବଢ଼ିଆ କାମ କରୁଥିଲେ । ଆମ ତନ୍ତୀ ଏମିତିକା ଲୁଗା ବୁଣୁଥିଲେ ଯେ ତାକୁ ଯିଏ ଦେଖିବ ଘଡ଼ିଏ ଠିଆହେବ । ବିଲାତ-ତିଆରି ଚିଜ ପାଇଁ ଏ ଦେଶରେ ସେମିତି କିଛି ବଜାର ନ ଥିଲା ।

ଇଂରେଜମାନେ ଆଉ ଗୋଟିଏ କଥା ଲକ୍ଷ୍ୟ କଲେ । ଆମ ଦେଶରେ ଶ୍ରେଷ୍ଠ ବଡ଼ ଅନେକ ରାଜା ଥିଲେ । ଦିଲ୍ଲୀ ରାଜାଙ୍କ ବଳ କମିଆସିଥିଲା । ରାଜାମାନଙ୍କ ଭିତରେ କଳିଗୋଳ ଲାଗିରହିଥିଲା । ମଝିରେ ମଝିରେ ଲଢ଼େଇ ହେଉଥିଲା । ଗୋରାମାନେ ନିଜ ଦେଶରୁ ଅଳ୍ପ ସୈନ୍ୟ ନେଇ ଆସିଲେ; କେତେବେଳେ ଏ ପକ୍ଷ ନେଲେ ତ କେତେବେଳେ ସେ ପକ୍ଷ ନେଲେ । ନାନାପ୍ରକାର କୂଟକୌଶଳ ଖେଳ ଲଗାଇଦେଲେ । ଆମ ରାଜାମାନଙ୍କୁ ଗୋଟି ଗୋଟି କରି ଜବତ କଲେ । କେଇଟା ବର୍ଷ ଭିତରେ ଆମର ଏତେବଡ଼ ଦେଶଟାକୁ ଦଖଲ କରି ନେଇ ରାଜା ହୋଇ ବସିଲେ । ଆମ ଦେଶ ପରାଧୀନ ହେଲା ।

ବିଲାତରୁ ଏଣୁତେଣୁ ଗୁଡ଼ାଏ ଜିନଷ ଆଣି ଏଠାରେ ବିକିବାକୁ ବସିଲେ । କିନ୍ତୁ ଯେପର୍ଯ୍ୟନ୍ତ ଆମ କାରିଗରମାନେ ଭଲ ଚିଜ ତିଆରି କରୁଛନ୍ତି, ଲୋକେ ତାଙ୍କ ଦେଶର ଜିନଷକୁ ବା କିଣିବେ କାହିଁକି ? ଆମ କାରିଗରମାନଙ୍କ ହାତ ବାନ୍ଧିଦେବା ପାଇଁ ସେମାନେ ନାନା ଉପାୟ ଖୋଜିଲେ । କେତେ ସ୍ଥାନରେ ଭଲ ଭଲ ତନ୍ତୀଙ୍କ ଆଙ୍ଗୁଠି କାଟିଦେଲେ । ନାନାପ୍ରକାରର କର, ଟିକସ ବସାଇ ଆମ କାରିଗରଙ୍କ ମନବଳ ଭାଙ୍ଗିଦେଲେ । କ୍ରମେ ଆମେ ଗରିବ ହୋଇଗଲୁ; ଆମରି ସଂପଦରେ ବିଲାତର ଲୋକେ ଭଲରେ ଚଳିଲେ, ବଡ଼ଲୋକ ହୋଇଗଲେ ।

ଆମକୁ ଗରିବ କରିଦେଇ ମଧ୍ୟ ସେମାନଙ୍କର ମନବୋଧ ହେଲା ନାହିଁ । ସେମାନେ ନିଶ୍ଚିନ୍ତ ହୋଇ ରହିପାରିଲେ ନାହିଁ । ଆମ ପୂର୍ବପୁରୁଷଙ୍କ

ବାହୁବଳ କଥା ସେମାନେ ଶୁଣିଲେ । ଯେତେହେଲେ ତ ଆମେ ସେହିମାନଙ୍କ ବଂଶର ଲୋକ । କାଳେ କେଉଁ ଦିନ ଆମେ ଲଢ଼ିବୁ, ସେମାନଙ୍କୁ ଏ ଦେଶରୁ ନିକାଳି ଦେବୁ, ଏହି ଭୟରେ ଆମଠାରୁ ହାତହତିଆର ବି ଛଡ଼ାଇ ନେଲେ । ସାତସମୁଦ୍ର ତେର ନଈପାରିର ଗୋରାମାନଙ୍କ ପାଖରେ ଆମେ କୋଟି କୋଟି ଲୋକ ଗୋଲାମ ହୋଇ ରହିଲୁ ।

ବିଲାତରୁ ଅଳ୍ପ ସଂଖ୍ୟାରେ ସୈନ୍ୟ ଆସିଥିଲେ । ଏହି ଦେଶର ବହୁ ଲୋକଙ୍କୁ ତାଲିମ କରି ସିପାହୀ ଗୃକରୀ ଦେଇଦେଲେ । ଆମରି ସିପାହୀଙ୍କ ହାତରେ ଆମ୍ଭକୁ ଜବତ କରି ରଖିଥାଆନ୍ତି । ଯେଉଁମାନେ ଦିନେ ଏ ଦେଶର ଜୟ-ପତାକା ଉଡ଼ାଉଥିଲେ, ସେହିମାନେ ପୁଣି ବିଦେଶୀ ଶାସକଙ୍କ ହୁକୁମ ତାମିଲ କଲେ ।

ଦେହଟା ଗୋଲାମ ହୋଇଗଲେ ମଧ୍ୟ ଆମ ବୀର ସିପାହୀଙ୍କ ମନଟା ସହଜରେ ମାନିଲା ନାହିଁ । କଅଣ କରିବେ, କଅଣ କରିବେ ବୋଲି ସେମାନଙ୍କ ମନ ଛଟପଟ ହେଲା । ସେମାନେ ମାତିଉଠିଲେ, ଗୋରାମାନଙ୍କୁ ଏ ଦେଶରୁ ତଡ଼ିଦେବେ ବୋଲି ଯୁଦ୍ଧ ଆରମ୍ଭ କରିଦେଲେ । ଇଂରେଜମାନେ ଦେଖିଲେ ଯେ ଏ ଦେଶଟା ସେମାନଙ୍କ ହାତରୁ ଖସିଯିବ । ବିଲାତରୁ ବହୁ ସୈନ୍ୟ ଆଣି ଏ ଦେଶରେ ପହଞ୍ଚାଇ ଦେଲେ । ଆମ ଦେଶର ଲୋକଙ୍କ ହାତରେ ହାତହତିଆର ନ ଥିବାରୁ ସିପାହୀଙ୍କୁ ସେମାନେ ସାହାଯ୍ୟ କରି ପାରିଲେ ନାହିଁ । ଗୋରା ସୈନ୍ୟ ଆମ ସିପାହୀଙ୍କୁ ମାରି ପଦା କରିଦେଲେ । ବୀର ଭାରତୀୟ ସୈନ୍ୟଙ୍କ ଶବ ପାହାଡ଼ ପ୍ରମାଣ ଜମା ହୋଇଗଲା । ଆମ ଦେଶ ଲୋକେ ଡରିଗଲେ । ସାହେବମାନେ ତାଙ୍କ ରାଜୁତି ଚଳାଇ ଦେଶଟାକୁ ଶୋଷିବାରେ ଲାଗିଥାଆନ୍ତି ।

ଇଏ ହେଲାନ୍ତି ୧୮୫୭ ମସିହାର କଥା ।

ଭକ୍ତ ସୁଦାମା ଯେଉଁଠି ଜନ୍ମ ହୋଇଥିଲେ, ସେ ସ୍ଥାନର ନାମ 'ସୁଦାମା-ପୁରୀ' ବୋଲି ଆମ ପୁରାଣରେ ଲେଖାଅଛି । ସେଇଠି ଆମ ଓଡ଼ିଶାର ପଶ୍ଚିମରେ । ଗୁଜୁରାଟ ନାଁ ଶୁଣିଥିବ । ସେହି ରାଜ୍ୟ ଭିତରେ ଅଛି କାଠିଆବାଡ଼ । ତାଆରି ଭିତରେ ପୋରବନ୍ଦର ବୋଲି ଯେଉଁ ଗ୍ରେଟିଆ ସହରଟି ଅଛି, ସେହି ଗୋଟିକ ହେଉଛି ପୁରାଣର ସେହି ସୁଦାମା-ପୁରୀ ।

ବୀର ସିପାହୀଙ୍କ ଲଢ଼ାଇ ଶେଷ ହେବାପରେ ବାରବର୍ଷ ବିତି-ଯାଇଥାଏ । ୧୮୬୯ ମସିହା ଅକ୍ଟୋବର ଦୁଇ ତାରିଖ । ପୋରବନ୍ଦରରେ ଗୋଟିଏ ପିଲା ଜନ୍ମ ହେଲା । ତା' ବାପ-ମାଆଙ୍କର ଆନନ୍ଦ ଦେଖେ କିଏ ! ଏଇଟି ହେଉଛି କୋଡ଼ପୋଛା ପୁଅ । ତେଣୁ ମାଆଙ୍କର ଖୁବ୍ ଗେହ୍ଲା । ନାଁ ଦିଆହେଲା ମୋହନ ଦାସ୍ । ତା' ବାପା କରମଚାନ୍ଦ ଗାନ୍ଧୀ ଖୁବ୍ ନାମ୍‌ଜାଦା ଲୋକ । ଡାକ-ନାମ କବା ଗାନ୍ଧୀ; କାଠିଆ-ବାଡ଼ ରଜାଙ୍କର ପାଟମନ୍ତ୍ରୀ । ଲୋକେ କୁହାକୁହି ହୁଅନ୍ତି— "କବା ଗାନ୍ଧୀ କାହାକୁ ଡରିବା ଲୋକ ନୁହନ୍ତି ।



[ ବାପା କରମଚାନ୍ଦ ଗାନ୍ଧୀ ]

ରଜାଙ୍କର ଭୁଲ ଦେଖି ସେ ମୁହେଁ ମୁହେଁ କହି ଦିଅନ୍ତି ।" ମୋହନର ମା' ପୁତ୍ଳୀ ବାଈ ଦିଅଁ-ଦେବତାଙ୍କୁ ଖୁବ୍ ମାନନ୍ତି । ପ୍ରତିଦିନ ପୂଜା ସେବା ନ କଲେ ପେଟକୁ ପାଣି ଟୋପାଏ ବି ନିଅନ୍ତି ନାହିଁ ।"



[ ମା' ପୁତ୍ଳୀ ବାଈ ]

ପୁଅଟି ଟିକିଏ ବଡ଼ ହୋଇଗଲାରୁ ତାକୁ ଖେଳାଇବା ପାଇଁ

ଜଣଙ୍କୁ କାହାକୁ ରଖିବାକୁ ପଡ଼ିଲା । ପୁତ୍ଳୀ ବାଈ ପାଇଗଲେ ଗୋଟିଏ ବୁଢ଼ୀ । ତା' ନାମ ରମ୍ଭା । ସେ ସବୁବେଳେ ମୋହନକୁ ନିଜ ପୁଅ ଭଳି ଶରଧା କରୁଥାଏ ।



[ ସାତ ବର୍ଷର ପିଲା ]

ପଢ଼ା ସମୟ ହେଲାରୁ ମୋହନ ଗୃହଶାଳୀରେ ଯାଇ ବସିଲା । ସେ ଭାରି ଲାଜକୁଳା; ଯେମିତି ଛୁଟି ହେବ ଘରକୁ ପଳାଇ ଆସିବ । ତା' ଶିକ୍ଷକ ଖଣ୍ଡିକ ଜାଣି ତା ସାଙ୍ଗ ।

ଆଉ ଟିକିଏ ବଡ଼ ହେଲା । ରମ୍ଭା ଦେଖିଲା ଯେ ମୋହନର ଭୂତ-ପ୍ରେତକୁ ଭାରି ଡର । ବୁଢ଼ୀର ଚିନ୍ତା କେମିତି ତା' ମନରୁ ଡର ଛଡ଼ାଇବ । ଦିନେ ତାକୁ କହିଲା—'ବାପ ରେ, ତୁ ଯଦି ରାମନାମ ଜପିବୁ ଭୂତ ଡରି ରହିବ ନାହିଁ ।' ପିଲା ମନକୁ ଏ କଥା ବେଶ୍ ଛୁଇଁଲା । ସେ ରାମନାମ ଜପିବା ଶିଖିଲା । ତା'ର ଯେତେବେଳେ କୋଉ କଥାରେ ଡର ହୁଏ, ସେ ରାମନାମ ଜପେ—ତା ଡର ଛାଡ଼ିଯାଏ ।

ଥରେ ବାପା କରମଚାନ୍ଦ ଗାନ୍ଧୀ ଖଣ୍ଡିଏ ବହି କିଣି ଆଣିଥିଲେ । ମୋହନ ସେଇଟିକୁ ଦେଖୁ ଦେଖୁ ଗୋଟିଏ ଗପ



[ ଚଉଦ ବର୍ଷ ]

ଉପରେ ଆଖି ପଡ଼ିଲା । ଗପଟି ହେଉଛି ଶ୍ରବଣ ବୋଲି ଗୋଟିଏ ପିଲା ବିଷୟରେ । ସେ ପିଲାର ବାପ-ମା' ଅନ୍ଧ । ଅନ୍ଧ ବାପ-ମାଆଙ୍କ ସେବାରେ ପିଲାଟି କେମିତି ଦିନରାତି ଲାଗିଥାଏ, ସେହି ବିଷୟ ସେ ଗପରେ ଲେଖା-ଥାଏ । ତାହାର କଥା ମୋହନ ଭାବୁଥାଏ । ଯୋଗକୁ ସେତିକି ବେଳକୁ ଦଳେ ନାଚବାଲା ରାଜକୋଟ ଆସିଥାଆନ୍ତି । ସେମାନେ 'ଶ୍ରବଣ ସୁଆଙ୍ଗ' ଦେଖାଉ ଥାଆନ୍ତି । ବାପ-ମା ଅନ୍ଧ ହୋଇଥିବାରୁ ସେମାନଙ୍କୁ ପୁଅ କେମିତି କାନ୍ଧରେ ବସାଇ ନିଆ-ଆଣ କରେ ସେ କଥା ସେ ଦେଖିଲା । ଯିଏ ଜନ୍ମ କରିଛନ୍ତି, ସେମାନଙ୍କ ପାଇଁ ଏହି ପୁଅ ଶ୍ରବଣ କେତେ କଷ୍ଟ ନ କରୁଛି ବୋଲି ଭାବି ପିଲା ମୋହନ କାବା ହୋଇ ଯାଉଥାଏ ।

ଶ୍ରବଣ କଥା ମନରୁ ଟିକିଏ ହେଲେ ଯାଇ ନ ଥାଏ—ଆସିଗଲେ ଆଉ ଦଳେ ନାଚବାଲା । ସେମାନେ ଦେଖାଇଲେ 'ହରିଶ୍ଚନ୍ଦ୍ର ସୁଆଙ୍ଗ' । ଯାହା ଥରେ କହି ଦେଇଛନ୍ତି ତାକୁ ରଖିବା ପାଇଁ, ସତ୍ୟରକ୍ଷା ପାଇଁ ହରିଶ୍ଚନ୍ଦ୍ର ବହୁତ ଦୁଃଖ ସହିଲେ—ଯେତେ ବିପଦ ପଡ଼ିଲେ ମଧ୍ୟ ସତରୁ ଟଳିଲେ ନାହିଁ ।

ମୋହନ ବିଚାରିଲା—"ସମସ୍ତେ କାହିଁକି ଏମିତି ହରିଶ୍ଚନ୍ଦ୍ର ଭଳି ସତ ନ କହିବା ?"

ଏ ସଂସାରରେ ତୁଳସୀଗଛ ଅଛି—ବିଛୁଆତି ମଧ୍ୟ ରହିଛି । କେତେ ଜଣ ଖରାପ ସାଙ୍ଗ ତାଙ୍କ ପାଖରେ ଜୁଟିଗଲେ । ସାଙ୍ଗସୁଖରେ ପଡ଼ି ବିଡ଼ି-ସିଗାରେଟ୍ ଖାଇଲେ । ସେ ହେଉଛନ୍ତି ବୈଷ୍ଣବ ଘରର ପୁଅ । ମାଂସ ଆଇଁଷ ତାଙ୍କ ବଂଶରେ କେହି ଛୁଅନ୍ତି ନାହିଁ । ଏଇ ସାଙ୍ଗଙ୍କ ମେଳରେ ପଡ଼ି ସେ ଲୁଚିଇ ଲୁଚିଇ ମାଂସ ବି ଖାଇଲେ । ବିଡ଼ି-ସିଗାରେଟ୍ କିଣିବା ପାଇଁ, ମାଂସ ତରକାରି ଆଣିବା ପାଇଁ ଖରାପ ସାଙ୍ଗଙ୍କ ଶିକ୍ଷାରେ ପଡ଼ି ଘରୁ ଲୁଚିଇ ପଇସା ନେଇଯିବା ପର୍ଯ୍ୟନ୍ତ କଥା ଗଲା ।

କିନ୍ତୁ ଅଳ୍ପଦିନେ ଜାଣିପାରିଲେ ଯେ ସେ ଖରାପ କାମ କରୁଛନ୍ତି । ତାଙ୍କ ମନ ଭିତରକୁ ଶ୍ରବଣର କଥା, ହରିଶ୍ଚନ୍ଦ୍ରଙ୍କ କଥା ବାରମ୍ବାର ଆସି ଯାଉଥାଏ । ଖରାପ କାମ କରିସାରିଲେଣି—ତାକୁ ପୁଣି ଲୁଚିଇବେ କାହିଁକି ?

ବାପାଙ୍କ ଆଗରେ ଯାଇ ସବୁ ମାନିଗଲେ । ପୁଅକୁ କବା ଗାନ୍ଧୀ ମାଡ଼ ତ ଦେଲେ ନାହିଁ—ଗାଳି ମଧ୍ୟ ଦେଇ ନାହାନ୍ତି । କେବଳ କାନ୍ଦିଲେ । ସେହି

କାନ୍ଦ ମୋହନଙ୍କୁ ଖୁବ୍ ବାଧିଲା । ମାଡ଼ ଖାଇଥିଲେ ଯେତେ କାଟି ନ ଥାନ୍ତା; ବାପାଙ୍କ ଲୁହ ତା'ଠାରୁ ବେଶୀ କାଟିଲା । ସେ ବସି କାନ୍ଦିଲେ । ସେହି ଦିନଠାରୁ ସେ ନିଜ ଜୀବନରେ ଜାଣିଶୁଣି ମିଛ କହି ନାହାନ୍ତି କି ଖରାପ କାମ କରି ନାହାନ୍ତି । ରାଜକୋଟ ହାଇସ୍କୁଲରେ ପଢ଼ୁଥିବାବେଳେ ଥରେ ଉପର ହାକିମ ପାଠ ପରୀକ୍ଷା ପାଇଁ ଆସିଥିଲେ । ପିଲାଙ୍କୁ ଗୋଟିଏ ବନାନ ପଚାରି-ଦେଲେ । କେତେ ପିଲା ଠିକ୍ ଲେଖିଲେ—କେହି କେହି ଭୁଲ କରିଦେଲେ । ମୋହନଙ୍କର ଭୁଲ ହୋଇଥାଏ । ଗୁରୁଜୀ ତାଙ୍କୁ ଗୋଡ଼ରେ ଖୋଞ୍ଚି ଠାରୁ ଥାଆନ୍ତି—'ଆଗ ପିଲାଠଉଁ ଦେଖି ବନାନ ଠିକ୍ କରିଦେ ।' କିନ୍ତୁ ସେ ବା କାହିଁକି କପି କରିବେ ? ଭୁଲ ହେଲା ପଛକେ କପି କରି ବାହାଦୁରୀ ନେଲେ ନାହିଁ । ଅସଲ କଥାଟି ସେ ବୁଝିଯାଇଥିଲେ—କପି କରିବା ଯାହା; ଚୋରି କରିବା ସେଇଆ ।


[ ସତର ବର୍ଷ ହେଲାଣି ]

ହାଇସ୍କୁଲରେ ପଢ଼ା ସାରି କଲେଜରେ ନାଁ ଲେଖାଇଲେ । ସେଠା ପଢ଼ା ତାଙ୍କୁ ସେମିତି କିଛି ସୁଖ ଲାଗୁ ନ ଥାଏ । ମୁରବିମାନେ ଭାବିଲେ ମୋହନଙ୍କୁ ବିଲାତ ପଠାଇ ଦେବେ । ବାରିଷ୍ଟରୀ ପଢ଼ିଆସିଲେ ବାପାଙ୍କ କାମରେ ରହିଯିବେ ।

ଆଜିକାଲି ସିନା ଶହ ଶହ ଲୋକ ବିଦେଶ ଗଲେଣି । ସେ ଯୁଗରେ ତାହା ନ ଥିଲା । ତାଙ୍କ ଜାତିର ଯେଉଁମାନେ ମୁଖିଆ, ସେମାନେ କହିଲେ—"ଜାହାଜରେ ଚଢ଼ି ସମୁଦ୍ର ପାରିହୋଇ ବିଲାତ ଗଲେ ଜାତି ଯିବ ।" ମୋହନ ଏଭଳି ବାଜେ କଥା ଶୁଣିବାକୁ ମନା କରିଦେଲେ । ଜାତିଆଣ କଟକଣା ତାଙ୍କୁ ଡରାଇ ପାରିଲା ନାହିଁ ।

କିନ୍ତୁ ଏଣେ ଯେ ମାଆ ପୁତୁଳୀ ବାଈ ଆଉ ଗୋଟାଏ କଥାରେ ଅଡ଼ି-ବସିଲେଣି । ତାଙ୍କୁ କୁହାଯାଇଥାଏ—ବିଲାତ ଗଲେ ଭାରତର ପିଲାଏ ମଦ

ଖାଆନ୍ତି । ସେଠାରେ ମାଂସ ଖାଇବାଟା ତ ଅତି ମାମୁଲି କଥା; ତେଣୁ ସେ ପୁଅକୁ ବିଲାତ ପଠାଇବାକୁ ଏକାବେଳକେ ନାରାଜ । କଅଣ କଲେ ମାଆ-ମନ ମାନିଯିବ, ସେଇ ସୂତ୍ର ମୋହନଙ୍କୁ ଜଣାଥିଲି । ମାଆଙ୍କ ଆଗରେ ସେ ନିୟମ କଲେ ଯେ ବିଲାତରେ ମଦ ମାଂସ ଛୁଇଁବେ ନାହିଁ । ସେଇଥିରେ ମାଆଙ୍କ ମନ ମାନିଗଲା—ଦରିଆ ପାରହୋଇ ଯିବା ପାଇଁ ଅନୁମତି ମିଳିଗଲା । ମାଆ କଇଲାଣ କଲେ ।

ବିଲାତରେ ପହିଲେ ପହିଲେ ସେ ବହୁତ ପଇସା ଖର୍ଚ୍ଚ କଲେ । ଦାମିକା ପୋଷାକ, ଭଲ ଭଲ ପୋଷାକ ପିନ୍ଧି ଠିକ୍ ସାହେବଙ୍କ ଭଳି କେମିତି ଦେଖାଯିବେ, ସେଇଆଡ଼କୁ ମନ ଯାଉଥାଏ । ନାଚ, ଗୀତ ଶିଖିବାରେ ମଧ୍ୟ ପଇସା ଖର୍ଚ୍ଚ କରୁଥାଆନ୍ତି । ଘରୁ କେତେ କଷ୍ଟରେ ଟଙ୍କା ଯାଉଥାଏ, ସେକଥା ବିଚାରିବାକୁ ଆଉ ଫୁରୁସତ୍ କାହିଁ ? କିନ୍ତୁ ଅଳ୍ପଦିନ ପରେ ତାଙ୍କର ମନ ବଦଳିଗଲା, ଆଉ ବଦ୍‌ଖର୍ଚ୍ଚ କରିବାକୁ ମନ ଗଲାନାହିଁ ।



[ ବାରିଷ୍ଟର ଗାନ୍ଧୀ ]

ଅଳ୍ପ ବୟସରେ ସେ ବିଲାତ ଯାଇଥିଲେ । ପିଲାବେଳକୁ ଆମ ଶାସ୍ତ୍ର-ପୁରାଣ ସେତେ କିଛି ପଢ଼ି ନ ଥିଲେ । ସେଇଠି ତାଙ୍କର ମନ ହେଲା ସେସବୁ

ପଢ଼ିବା ପାଇଁ । ଆମ ଦେଶର ମୁନିଋଷିମାନେ କେତେ ଭଲ ଭଲ କଥା ଲେଖିଯାଇଛନ୍ତି ଦେଖି ତାଙ୍କ ମନ ଆନନ୍ଦରେ ପୂରିଗଲା ।

ବାଇଶ ବର୍ଷବେଳକୁ ବିଲାତରୁ ବାରିଷ୍ଟରୀ ପାଶ କରି ଫେରିଲେ । ଦେଶକୁ ଆସି ଶୁଣିଲେ ଯେ ମା' ଆଉ ଏ ସଂସାରରେ ନାହାନ୍ତି । ରଜାଙ୍କ ପାଖରେ ଦେଓ୍ୱାନ ହେବା କଥା ତାଙ୍କ ମନରୁ କୁଆଡ଼େ ଚାଲିଗଲା । ଓକିଲାତି କରିବେ ବୋଲି ସେ ସ୍ଥିର କରି କଚେରୀକୁ ଯିବା ଆରମ୍ଭ କରିଦେଲେ ।

ବାରିଷ୍ଟର ଗାନ୍ଧୀଙ୍କ ପୂରା ନାଁ ହେଉଛି—ମୋହନଦାସ୍ କରମଚାନ୍ଦ ଗାନ୍ଧୀ । ଆମ ଓଡ଼ିଶାରେ ଯେମିତି ନାଁ ଦିଆଯାଏ, ଗୁଜୁରାଟରେ ସେମିତି ହୁଏ ନାହିଁ । ବାପ ନାମ ପୁଅ ନାମ ଏକାଠି ରହେ । ଆଗ ପୁଅ ନାମ, ତା ପାଖକୁ ବାପ ନାଁ, ଶେଷକୁ ରହିବ ସାଂଙ୍ଗ । ସେଇ ଅନୁସାରେ ମୋହନଙ୍କ ପୂରା ନାମ ଲେଖାଯାଏ 'ମୋହନଦାସ କରମଚାନ୍ଦ ଗାନ୍ଧୀ' । ଆମ ଏଠାରୁ ସେଠିଣେ ଆଉ ଗୋଟିଏ ତଫାତ୍ ଅଛି । ମାନ୍ୟରେ ଜଣକୁ ଆମେ କହୁ 'ବାବୁ'—ସେଠିଣେ କହନ୍ତି 'ଜୀ' । ତେଣୁ ତାଙ୍କୁ 'ଗାନ୍ଧୀଜୀ' ବୋଲି ମଧ୍ୟ ଡକାଯାଏ ।

ଗାନ୍ଧୀଜୀ ଯିନା ବାରିଷ୍ଟରୀ କରୁଥାଆନ୍ତି—ତାଙ୍କ ମନ ସେତେ ମାନୁ ନ ଥାଏ । ଓକିଲାତି କାମରୁ ସେ ସେମିତି କିଛି ରସ ପାଉ ନ ଥାନ୍ତି ।

ତାଙ୍କ ପୋରବନ୍ଦରର ଜଣେ ବେପାରୀ ଦକ୍ଷିଣ-ଆଫ୍ରିକା ଦେଶରେ ବେପାର କରନ୍ତି । ଗୋଟିଏ ମକଦ୍ଦମାରେ ତାଙ୍କର ବାରିଷ୍ଟର ଦରକାର ପଡ଼ିଲେ । ସେ ଗାନ୍ଧୀଜୀଙ୍କୁ ଡାକିନେଲେ ।

ଦକ୍ଷିଣ-ଆଫ୍ରିକା ବୋଲି ଯେଉଁ ଦେଶ, ସେଠାରେ ଆରମ୍ଭରୁ ଗୋରାମାନେ ନ ଥିଲେ । ସେ ଦେଶର ଧନସମ୍ପଦ ଦେଖି ସେମାନେ ବହୁସଂଖ୍ୟାରେ ଯାଇ ସେଠାରେ ବସବାସ କରି ରହିଗଲେ । ସେ ଦେଶର ବାସିନ୍ଦାଙ୍କୁ ତଳେଇ ରଖିଦେଲେ । ଚାଷବାସ ଆରମ୍ଭ କରି ଦେଖିଲେ ଯେ ଭଲ ଚାଷ-ମୂଲିଆ ମିଳୁ ନାହାନ୍ତି । ସେଠା ବାସିନ୍ଦାଙ୍କୁ ଚାଷବିଦ୍ୟା ଭଲ-ଭାବରେ ଜଣା ନ ଥିଲା । ଆମ ଦେଶରେ ତ ଗୋରା ରାଜୁତି ଥାଏ ! ଭାରତ ସରକାରଙ୍କ ସହିତ ଚୁକ୍ତି କରି ଆମ ଦେଶରୁ ଅନେକ ଲୋକଙ୍କୁ ସେ ଦେଶକୁ

ନେଇଗଲେ । ନେଲାବେଳେ ବହୁତ ଲୋଭ ଦେଖାଇଲେ । କଥା ହୋଇଥିଲା ଯେ ଏଠା ମୂଲିଆ ସେ ଦେଶର ଗୋରାଙ୍କ ପାଖରେ ପାଞ୍ଚବର୍ଷ ମୂଲ ଲାଗିବେ; ତାହାପରେ ସେମାନେ ନିଜର ଗୃହବାସ କରିବେ ।

ଚୁକ୍ତି ଅନୁସାରେ ସେମାନେ ପାଞ୍ଚ ପାଞ୍ଚ ବର୍ଷ ଖଟିଲେ । ତାହାପରେ ନିଜେ ନିଜେ ଜମି କିଣି ନିଜର ଗୃହ ଆରମ୍ଭ କରିଦେଲେ । ବଜାରରେ ପନିପରିବା ବିକିଲେ । ଗୋରାମାନଙ୍କ ଦେହ ସହିଲା ନାହିଁ । ସେମାନେ ଭାବିଥିଲେ, ଏହିମାନେ ସବୁଦିନେ ମୂଲିଆ ହୋଇ ରହିବେ—ସେମାନଙ୍କ ଜମି ଚାଷ କରି ଦେଉଥିବେ । ତେଣେ ସେମାନେ କଳକାରଖାନା ବସାଇବେ, ବେପାର କରିବେ । ତାହା ତ ହେଲା ନାହିଁ । କେବଳ ସେତିକି ନୁହେଁ— ଆମ ଦେଶୀ ଲୋକେ ବେପାର-ବଣିଜ ମଧ୍ୟ କରି ଗୋରାଙ୍କ ସଙ୍ଗରେ ତାଳ ପକାଇଲେ ।

କ୍ରମେ ଦେଖାଗଲା ଯେ ଆମ ଲୋକଙ୍କୁ ହଇରାଣ କରିବା ଉଦ୍ଦେଶ୍ୟରେ ନାନାରକମ ଆଇନ ହେଲା । ଗୋରାମାନେ ଭାରତ-ଲୋକଙ୍କୁ କଳେ-ବଳେ-କୌଶଳେ ତଡ଼ିବା ମତଲବରେ ରହିଲେ; ଏଠୁ ହାତଗୋଡ଼ ଧରି ଡାକନେଇ ସେଠି ଗୋଇଠା ମାରି ତଡ଼ିବାକୁ ତିଆର ! କଳା ଲୋକଙ୍କ ଉପରେ ଅପମାନିଆ ଟିକସ ବସାଇଦେଲେ ।


[ ଦକ୍ଷିଣ-ଆଫ୍ରିକାରେ ]

ଗାନ୍ଧୀଜୀ ଦେଖିଲେ, ଏଇଟା ବଡ଼ ଅନ୍ୟାୟ କଥା । ଗୋରାଙ୍କ ଜୁଲମରୁ କେମିତି ଆମ ଲୋକଙ୍କୁ ରକ୍ଷା କରିବେ, ସେଇ ହେଲା ତାଙ୍କର ଚିନ୍ତା । ଦିନେ ଜଣେ ଲୋକ ତାଙ୍କ ପାଖକୁ ଆସିଲା । ସେ ଖାଲି କାନ୍ଦୁଥାଏ, ଗୋଟାକପାକ ଥରୁଥାଏ । ତା' ଗୋରା ମାଲିକ ତାକୁ ମାରି ଦି'ଟା ଦାନ୍ତ ଝଡ଼ାଇ ଦେଇଥାଏ । କଳା ଲୋକ ମାଡ଼ ଖାଇଲେ ତାଙ୍କ ପିଠିରେ ପଡ଼ିବାକୁ ତ କେହି ଲୋକ ନ ଥିଲା । ଗୋରାମାନଙ୍କ ଭିତରେ

ଏମିତି ମସୁଧା ଥାଏ ଯେ କଳା ଲୋକଙ୍କୁ ଓକିଲ ମଧ୍ୟ ମିଳନ୍ତି ନାହିଁ । ସେ ଲୋକକୁ ନେଇ ଗାନ୍ଧୀଜୀ ମକଦ୍ଦମା ଚଳାଇଲେ । ଲୋକଟିର ଡିଗ୍ରୀ ହେଲା । ସେ ଆଉ ଗୋରା ମାଲିକ ପାଖରେ ରହିବ ନାହିଁ ବୋଲି ରାୟ ମିଳିଲା ।

ଚାରିଆଡ଼େ ଏ ଖବର ବିଜୁଳି ଭଳି ଖେଳିଗଲା । ଗରିବଙ୍କ କଥା, କଳା ଲୋକଙ୍କ କଥା ବୁଝିବାକୁ ଜଣେ ଜଣେ ବାରିଷ୍ଟର ଆସିଛି । ସେହି ବାରିଷ୍ଟର ପାଖକୁ ଲୋକସ୍ରୁଅ ଛୁଟିଲା ।

ଗୋରାପାକ ଏଣେ ଗାନ୍ଧୀଜୀଙ୍କ ଉପରେ କଡ଼ମଡ଼ ହୋଇ ରକତ-ଚକ୍ଷୁ ଦେଖାଉ ଥାଆନ୍ତି । ସିଏ କଣ ଡରିଯିବା ଲୋକ ? ରମ୍ଭା ଧାଈ ତ ତାଙ୍କୁ ନଡ଼ର-ମନ୍ତ୍ର ଶିଖାଇ ଦେଇଛି । ରାମ ନାମ ଧରିଲେ ତାଙ୍କର ସବୁ ଡର କୁଆଡ଼େ ଚାଲିଯାଏ ।

ଦକ୍ଷିଣ-ଆଫ୍ରିକାର ଗୋରା ଲୋକଙ୍କ ସହିତ ଭାରତୀୟମାନଙ୍କ ବିବାଦ କ୍ରମେ ତେଜିଲା । ଗାନ୍ଧୀଜୀ ଯେଉଁ ବାଟରେ ଯିବାକୁ କହିବେ, ଭାରତୀୟମାନେ ସେହି ବାଟରେ ଯିବେ ବୋଲି ସ୍ଥିର କରିଦେଲେ ।

ହେଲେ କଅଣ ହେବ, ଗାନ୍ଧୀଜୀ ବଡ଼ ଚିନ୍ତାରେ ପଡ଼ିଲେ । ଗୋରା-ମାନେ ଯେମିତି ଅମଣିଷ ଭଳି କାରବାର କରୁଛନ୍ତି, ସେଥିରେ ଆମ ଲୋକେ ଆଉ କେତେ ଦିନ ବା ବରଦାସ୍ତ କରିବେ ? ସହିବାର ଗୋଟାଏ ସୀମା ଅଛି । ଯଦି କେତେବେଳେ ରାଗ ଚଢ଼ିବ, ଜୋର ମାଡ଼ପିଟ ହୋଇଯିବ, ସେତେବେଳେ ଅବସ୍ଥା ଅସମ୍ଭାଳ ହେବ । ଗାନ୍ଧୀଜୀଙ୍କର କେବେହେଲେ ଇଚ୍ଛା ନୁହେଁ ଯେ ଭାରତୀୟ ଲୋକେ ହିଂସା ଆଚରଣ କରନ୍ତୁ । ସେ ନିଜର ଲୋକଙ୍କୁ ଡାକି ବୁଝାଇଲେ—"ଦେଖ, ଆମେ ଗୋରାଙ୍କ ଜୁଲମ ସହିବା ନାହିଁ । ତା' ବୋଲି ଗୋରାଙ୍କୁ ମାରିବା ନାହିଁ । କାହାକୁ ମାରିବା ପିଟିବା ଜଙ୍ଗଲୀ ଲୋକର କାମ, ଅସଭ୍ୟ ଲୋକର କାମ । ଆମେ ସତକୁ ଜଗି ରହିଥିବା । ଆମକୁ ସେମାନେ ପିଟି ପିଟି ମାରିଦେଲେ ମଧ୍ୟ ଜୁଲମବାଜଙ୍କ ହୁକୁମ ମାନିବା ନାହିଁ । ଆମକୁ ଜେଲକୁ ନିଅନ୍ତୁ ପଛକେ କଳା ଲୋକଙ୍କ ଉପରେ ଯେଉଁସବୁ ଅପମାନିଆ ଟିକସ ବସିଛି, ସେସବୁ ଟିକସ ମୋଟେ ଦେବା ନାହିଁ ।"

ଏ କଥା ସମସ୍ତଙ୍କୁ ନୂଆ ଲାଗିଲା । ଆଗେ ତ ଥିଲା ଯେ ଦୁ' ପକ୍ଷର ଲଢ଼େଇ ହେଲେ ମାରପିଟ୍ ହୁଏ । ଜଣେ ମାରୁଥିବ—ଅନ୍ୟ ଜଣେ ଖାଲି ସହୁଥିବ ! ଇଏ ପୁଣି କେମିତିକା କଥା ?

ଗାନ୍ଧୀଜୀ ପୁଣି ବୁଝାଇ କହିଲେ—"ତୁମେମାନେ ବୁଝୁନା ? ଆମେ କ'ଣ ତାଙ୍କୁ ଡର ତାଙ୍କ ମାଡ଼ ସହିଯିବା ? ଅନ୍ୟାୟ ବିରୁଦ୍ଧରେ କଥା କହୁଥିବା—ମାଡ଼ ହେଲେ ସହୁଥିବା । ତାହା ଫଳରେ ମାଡ଼ଦେଲାବାଲାଙ୍କୁ ଲଜ୍ଜା ହେବ । ସମସ୍ତେ ତାଙ୍କୁ ନିନ୍ଦା କରିବେ । ସେ ନିଜର ଭୁଲ ନିଶ୍ଚୟ ବୁଝିବେ । ଯାହା ଦେହରେ ବେଶି ବଳ, ସେଇ କଣ ଏକା ଏହି ସଂସାରରେ ମୁଣ୍ଡଟେକି ଚାଲିବ ? ଯାହାର ଦେହବଳ ନାହିଁ, ସିଏ ତ ଜାଣି ମଲା ! ମୋ କଥାର ମରମ ବୁଝିଗଲେ ଦେହ-ଦୁର୍ବଳିଆ ଲୋକଟି ବି ଜଣେ ଗୁଣ୍ଡା ସାଙ୍ଗରେ ତାଳ ପକାଇବ । ମୋ କଥା ଅନୁସାରେ ହିଂସା-ଲଢ଼େଇ ଛାଡ଼ି ଅହିଂସା-ଲଢ଼େଇ କର ।"

ଗାନ୍ଧୀଜୀଙ୍କ କଥା ସେଠା କଳା ଲୋକଙ୍କ ମନକୁ ପାଇଲା । ସେମାନଙ୍କ ସାହସ ବଢ଼ିଗଲା, ନୂଆ ବଳ ଆସିଗଲା । ସମସ୍ତେ ଏକଜୁଟ ହୋଇଗଲେ —ଚାଲିଲା ସତ୍ୟାଗ୍ରହ ଲଢ଼େଇ । ଗାନ୍ଧୀଜୀ ନିଜେ ଗୋରାଙ୍କଠାରୁ ମାଡ଼ ଖାଇ ଲହୁଲୁହାଣ ହୋଇଛନ୍ତି । ତାଙ୍କୁ ମାରି ମାରି ଚେତା ବୁଡ଼ାଇ ଦେଇଛନ୍ତି । ତେବେ ବି ସେ ହଟିଲେ ନାହିଁ । ତାଙ୍କ ସାଙ୍ଗରେ ହଜାର ହଜାର ଲୋକ ଜେଲ ଗଲେ । କେତେ ଜଣ ଜେଲ ଭିତରେ ମରି ବି ଗଲେ । ଭୟ ଛାଡ଼ି ଶହ ଶହ ମା' ଭଉଣୀ ଆଫ୍ରିକା ସରକାର ସଙ୍ଗରେ ଲଢ଼େଇ କଲେ । ସେମାନଙ୍କୁ ଜେଲ ଭିତରକୁ ନିଆଗଲା । ଶେଷକୁ ଆଫ୍ରିକା ସରକାର ଗାନ୍ଧୀଜୀଙ୍କୁ ଡକାଇ ରଫା କରିଦେଲେ । ସେହି ମିଳାମିଶାରେ କଳା ଲୋକଙ୍କର ବହୁତ ସୁବିଧା ହେଲା ।

ଆମ ଦେଶ ଲୋକେ ଶୁଣିସାରିଲେଣି ଯେ ଗାନ୍ଧୀ ବୋଲି ଜଣେ ବାରିଷ୍ଟର ଆଫ୍ରିକାରେ ଏତେ କାମ କରୁଛନ୍ତି; ତାଙ୍କ ଭଳି ସାହସୀ ଲୋକ ଆଉ କେହି ନାହାନ୍ତି । ସେ ଏମିତି କଅଣ କରୁଛନ୍ତି ଯେ ହଜାର ହଜାର ଲୋକ ତାଙ୍କ କଥା ମାନି ଜେଲ ଭିତରକୁ ମଧ୍ୟ ଆନନ୍ଦରେ ଚାଲିଯାଉଛନ୍ତି । ଶେଷକୁ ଦକ୍ଷିଣ-ଆଫ୍ରିକାର ଗୋରା ସରକାର ତାଙ୍କ ସାଙ୍ଗରେ ରଫା

କଲା । ଭାରତର ଖବରକାଗଜରେ ଏହିସବୁ ଖବର ବାହାରୁଥାଏ । "ଅହିଂସା ଯୁଦ୍ଧ"ର ଏହି ଗାନ୍ଧୀ ସେନାପତି କେମିତିକା ଲୋକ ହୋଇଥିବେ—ତାଙ୍କ ଭିତରେ କି ଗୁଣ, କେତେ ତାକତ ରହିଛି ବୋଲି ଲୋକେ ପଚରାପଚରି ହେଉଥାଆନ୍ତି ।

ଦକ୍ଷିଣ-ଆଫ୍ରିକାରୁ ବିଲାତବାଟେ ସେ ଯେତେବେଳେ ଭାରତକୁ ଫେରିଲେ, ଆମ ଦେଶର ଲୋକେ ସଭା-ସମିତି କରି ତାଙ୍କୁ ଧନ୍ୟ ଧନ୍ୟ କହିଲେ । ମଣିଷଭଳି ମଣିଷ ଜଣେ ଏତେଦିନେ ଭାରତ-ମାତା କୋଳରେ ଶୋଭା ପାଇଲା ବୋଲି ସମସ୍ତଙ୍କ ମୁହଁରୁ ଶୁଣାଗଲା । 'ଏଇ ହେବେ ଭାରତର ମୁରବି' ବୋଲି ଲକ୍ଷ ଲକ୍ଷ ଲୋକ କହିଉଠିଲେ । ଗାନ୍ଧୀଜୀ ସେତେବେଳକୁ ସ୍ଥିର କରିସାରିଥାଆନ୍ତି ଯେ ଯେତେ ଦିନ ବଞ୍ଚିବେ ଦେଶର ସେବା ହିଁ କରିବେ ।

ଗାନ୍ଧୀଜୀଙ୍କର ଭାଗ୍ୟ ଯେ ସେ କସ୍ତୁରବାଙ୍କୁ ବିବାହ କରିଥିଲେ । କସ୍ତୁରବା ସେମିତି କିଛି ପାଠ ପଢ଼ି ନ ଥିଲେ । ସେ ଗୋଟିଏ କଥା ବୁଝିଥିଲେ—ଯାହାଙ୍କ ହାତ ଧରିଛନ୍ତି, ସିଏ ଯେଉଁ କାମଟା ଭଲ ବୋଲି ବିଚାରି କରିବେ, ସେହି କାମରେ ସେ ସାହାଯ୍ୟ ଦେବେ । ଭଲ କାମରେ ସ୍ୱାମୀ ଆଗେଇ ଯାଉଥିବାବେଳେ ସେ ତାଙ୍କ ପଛରୁ ଟାଣିବେ ନାହିଁ—ବାଧକୁ ବାଧ ମିଶାଇ ତାଙ୍କର ସାଙ୍ଗରେ ଚାଲିବେ । ଏମିତିକା ଯୋଗ ନ ହୋଇଥିଲେ ଗାନ୍ଧୀଜୀ ଏତେ ଭଲ କାମ କରିପାରି ନ ଥାନ୍ତେ । ଦକ୍ଷିଣ-ଆଫ୍ରିକାରୁ ଆରମ୍ଭ କରି ଭାରତ ପର୍ଯ୍ୟନ୍ତ ସବୁଠାରେ ସେ ଗାନ୍ଧୀଜୀଙ୍କ ସଙ୍ଗରେ ଛାଇଭଳି ଥିଲେ ।



[ କସ୍ତୁରବା ]

ଏଇ ଦେଶରେ ଇଂରେଜ-ରାଜୁତି କେମିତି ଚାଲିଛି, ସେକଥା ସେ ଠିକ୍‌ଠାକ୍ କରି ବୁଝୁଥାଆନ୍ତି । କୋଟି କୋଟି ଲୋକଙ୍କର ଏହି ଦେଶକୁ ସାତ-ସମୁଦ୍ର ତେରନଈ ପାରିର ଲୋକେ ଆସି ଏତେ କାଳଧରି ଶାସନ କରୁଛନ୍ତି—ଏ ଦେଶର ସମ୍ପଦ ଲୁଟି ନେଉଛନ୍ତି; ଅଥଚ ଅଳ୍ପ କେତେ ଲୋକଙ୍କୁ ଛାଡ଼ିଦେଲେ କୋଟି କୋଟି ଲୋକ ଏକପ୍ରକାର ଚୁପ୍ ହୋଇ ବସିଛନ୍ତି ! ଏଇ କଥା ତାଙ୍କୁ ଖୁବ୍ ବାଧୁଥାଏ ।

ସେ ଆସି ଦେଖିଲେ, ଦେଶର କେତେ ଜଣ ପାଠୁଆ ଲୋକ ମିଶି 'କଂଗ୍ରେସ' ବୋଲି ଗୋଟିଏ ଅନୁଷ୍ଠାନ ଗଢ଼ିଛନ୍ତି । ବର୍ଷକରେ ଥରେ ହିଁ ସେମାନଙ୍କର ସଭା ହୁଏ । ସେ ସଭାକୁ ସାଧାରଣ ଲୋକେ, ଗାଁ ଚାଷୀ, ଏମିତିକି ଅଳ୍ପ ପାଠୁଆ ଲୋକେ ମଧ୍ୟ ଯାଇପାରନ୍ତି ନାହିଁ । ଯେଉଁମାନେ ଯାଉଥାଆନ୍ତି, ସେମାନେ ଇଂରାଜୀରେ ଭାଷଣ ଦିଅନ୍ତି । "ଆମେମାନେ ତୁମର ରାଜଭକ୍ତ ପ୍ରଜା, ଆମକୁ ବିଶ୍ୱାସ କର, ଆହୁରି ବଡ଼ ବଡ଼ ଚାକିରି ଦିଅ । ତୁମର ବାହୁଛାୟାତଳେ ଆମେ ରହିବୁ । ଆମକୁ ଏଇ ଏଇ ସୁବିଧା ଦିଅ"—ଏମିତିକା କଥା ସବୁ ସେଇଠି ପଡ଼େ । କେହିହେଲେ ଜଣେ କୁହନ୍ତି ନାହିଁ ଯେ 'ଆମ ଦେଶଟାକୁ ତୁମେ ଗୋରା ଲୋକ କାହିଁକି ମାଡ଼ି ବସିଛ ? ଆମ ଦେଶର ଧନ-ଦଉଲତ ନେଇ ତୁମ ଦେଶର ଲୋକଙ୍କୁ ତ ଘିଅ-ମହୁରେ ଭସାଇଲଣି—ଆମେ ଏତେ ଗରିବ ହୋଇଗଲୁଣି—ଏଣିକି ହେଲେ ଏହି ଦେଶ ଛାଡ଼ି ଚାଲିଯାଅ ।'

ଏଭଳି ସଭା—ଏଭଳି କଥାରେ ଗାନ୍ଧୀଜୀଙ୍କ ମନ ମୋଟେ ମାନୁ ନ ଥାଏ ।

ସେତିକବେଳକୁ ବିଲାତ ଓ ଜର୍ମାନୀ ଭିତରେ ଯୁଦ୍ଧ ଲାଗିଥାଏ । ବଡ଼ଲାଟ ଆମ ଗାନ୍ଧୀଙ୍କୁ ଡାକି କହିଲେ—"ଦେଖ, ଆମକୁ ବିପଦ ପଡ଼ିଛି । ଭାରତର ଲୋକେ ଆମକୁ ସବୁମନ୍ତେ ସାହାଯ୍ୟ କର ।"

ଆମ ଦେଶରେ ୧୯୦୫ ମସିହାରେ ଦଳେ ଯୁବକ ବାହାରି ଇଂରେଜମାନଙ୍କ ବିରୁଦ୍ଧରେ ଲାଗିଥିଲେ । ସେମାନଙ୍କୁ 'ବିପ୍ଳବୀ' ବୋଲି କୁହାଯାଉଥିଲା । ସେମାନେ ଜେଲକୁ ଡରୁ ନ ଥିଲେ କି ଫାଶୀକୁ ମଧ୍ୟ ଖାତିର କରୁ ନ ଥିଲେ । ସେଇମାନଙ୍କ କଥା ଲୋକଙ୍କ ମନକୁ ଖୁବ୍ ପାଉଥାଏ । 'ଜର୍ମାନୀ ଯୁଦ୍ଧରେ ଆମକୁ ସାହାଯ୍ୟ କର' ବୋଲି ବଡ଼ଲାଟ ଯେତେବେଳେ

କହିଲେ, ଅନେକ ଲୋକ ବିଗିଡ଼ିଲେ—'ଏତିକିବେଳେ ପାଳି ପଡ଼ିଛି । ଇଂରେଜମାନଙ୍କୁ ସାହାଯ୍ୟ ତ କରିବା ନାହିଁ; ବରଂ ଓଲଟି ହଇରାଣ କରିବା । ଏମାନେ ଆଜି ବଡ଼ କଅଁଳ କଥା କହୁଛନ୍ତି—ଯେମିତି ଯୁଦ୍ଧ ସରିଯିବ ଓ ସେମାନେ ଜିତିଯିବେ, ତେଣିକି ସେଇ କଅଁଳ କଥା ଆସ୍ତେ ଆସ୍ତେ ଟାଣ ହୋଇଯିବ ।'

ସେମାନଙ୍କୁ ଗାନ୍ଧୀଜୀ ବୁଝାଇ ଦେଇ କହିଲେ—"ସେ କଥା ହେବ ନାହିଁ । ମୁଁ ତ ମାନୁଛି ଯେ ସେମାନେ ଆମର ଖୁବ୍ ଖରାପ କରୁଛନ୍ତି । ତା' ବୋଲି ବିପଦରେ ପଡ଼ିଥିଲାବେଳେ ଆମେ ତାଙ୍କୁ ହଟହଟା କରିବା ନାହିଁ । ମଣିଷର କଥାରେ ଥରେ ବିଶ୍ୱାସ କଲେ କିଛି କ୍ଷତି ନାହିଁ । ଯୁଦ୍ଧ ପରେ ଆମ ହାତକୁ ଏ ଦେଶର ଶାସନଡୋରି ବଢ଼ାଇଦେବେ ବୋଲି କହୁଛନ୍ତି । ଯଦି ସେମାନେ ଠକି ଦେବେ, ଆମେ ସମସ୍ତେ ସେମାନଙ୍କର ବିରୁଦ୍ଧରେ ଉଠିବା ।"

ଆମ ଦେଶର ଲୋକେ ବିଲାତ ସରକାରକୁ ଯୁଦ୍ଧରେ ସାହାଯ୍ୟ ଦେଲେ । ଏ ଦେଶର ହଜାର ହଜାର ସିପାହୀ ବିଲାତ ସପକ୍ଷରେ ଲଢ଼ି ଜୀବନ ଦେଲେ ।

ଗରିବ ଲୋକ କଥା, ନିରାଶ୍ରୟ ଲୋକଙ୍କର ଦୁଃଖ ଶୁଣିବା ପାଇଁ ମଧ୍ୟ ଜଣେ ଲୋକ ବାହାରିଲାଣି—ଏ କଥା ଆଉ ଅଛପା ହୋଇ ନ ଥାଏ । ତେଣୁ ଲୋକେ ବହୁ ଆଶା ରଖି ତାଙ୍କ ପାଖକୁ ଆସନ୍ତି ।

ଦିନେ ଜଣେ ଚାଷୀ ଆସି ତାଙ୍କ ପାଖରେ ପହୁଞ୍ଚିଲେ । ତାଙ୍କ ଘର ବିହାରର ଚମ୍ପାରଣ ଜିଲ୍ଲାରେ । ସେ ସମୟରେ ନୀଳରଙ୍ଗ ବାହାରୁଥିଲା ଗୋଟିଏ ଗଛରୁ । ଗୋରାମାନେ ଚମ୍ପାରଣ ଚାଷୀଙ୍କ ହାତରେ ନୀଳଚାଷ କରାଇ ରଙ୍ଗ ତିଆରି କରୁଥିଲେ; ଭାରତରେ ଓ ଭାରତ ବାହାରେ ବିକି ବହୁତ ଲାଭ କରୁଥିଲେ । ସେହି ଜିଲ୍ଲାରେ ଠାଏ ଠାଏ "ନୀଳକୋଠି" ସବୁ ବସିଯାଇଥିଲା । ଗୋରାମାନେ ଆମ ଚାଷୀଙ୍କ ଉପରେ ଜୁଲମ କରୁଥିଲେ; ଅତି ଅଳ୍ପ ପଇସା ଦେଇ ସେମାନଙ୍କୁ ଖୁବ୍ ଖଟାଉଥିଲେ । ଗୋରାଙ୍କ ଅତ୍ୟାଚାରର ବିରୁଦ୍ଧରେ 'ଆହା' କହିବାକୁ କେହି ନ ଥିଲେ । ସେ ଚାଷୀ ଜଣକ ଆସି ଗାନ୍ଧୀଜୀଙ୍କୁ କହିଲେ—"ତୁମେ ନ ଗଲେ ଆମେ ମଲୁ ବୋଲି ଜାଣ ।" ତାଙ୍କ କଥା ଭାଙ୍ଗି ନ ପାରି ସେ ଯିବାକୁ ରାଜି ହେଲେ ।

କିନ୍ତୁ ବିହାରର ଗୋରା ହାକିମମାନେ ଆତଙ୍କ ମଣିଲେ । ଏଇ ଲୋକ ଯଦି ନୀଳଚୃଷି ଇଲାକାରେ ପଶିବ, ସବୁକଥା ଜାଣିଯିବ । ତେଣୁ ତାଙ୍କୁ ସେ ଇଲାକା ଭିତରେ ପୂରାଇଦେବା ନାହିଁ—ଏଇ ବିଗୁର ହେଲା । ଗାନ୍ଧୀଜୀ ଗଲେ ସେଠାରେ ଗୋଳମାଳ ହେବ ବୋଲି ଆଳ ଦେଖାଇ ତାଙ୍କ ଉପରେ ସେଠାକୁ ନ ଯିବା ପାଇଁ ହୁକୁମଜାରି କରିଦେଲେ ।

ମୋ ଦେଶର ଲୋକେ ବିପଦରେ ପଡ଼ିଥିବେ । ଘଟଣାଟା ପ୍ରକୃତରେ କଅଣ—ଏତକ ବୁଝିବାକୁ ଯିବାପାଇଁ ମଧ୍ୟ ମୋର ଅଧିକାର ନାହିଁ ! ବିପଦବେଳେ ଲୋକର ପିଠି ଆଉଁଷି ଦେବାପାଇଁ ପୁଣି ମନା !" ଏଇ କଥା ତାଙ୍କୁ ଭାରି ଛଟପଟ କଲା । ସେ ଜିଦ୍ ଧରିଲେ ସେଠାକୁ ଯିବେ ବୋଲି । ଖୁବ୍ ଘଣ୍ଟାଚକଟା ହେଲା । ଶେଷରେ ଚୃଷୀଙ୍କର ଜିତାପଟ ହେଲା । ଏହି ଆନ୍ଦୋଳନ ଫଳରେ ଚୃଷୀ-ମୂଲିଆଙ୍କ ମନକଥା ବୁଝିବାକୁ ତାଙ୍କୁ ସୁଯୋଗ ମିଳିଲା । ବହୁ କର୍ମୀ ତାଙ୍କ ପାଖରେ ପହଞ୍ଚିଗଲେ । ଗୁଜୁରାଟର ଚୃଷୀଙ୍କ ଉପରେ ଜୁଲମ ହେଲାବେଳେ ଗାନ୍ଧୀଜୀ ସେଠି ମଧ୍ୟ ଯାଇ ହାଜର ।

ଜର୍ମାନୀ ଯୁଦ୍ଧ ସରିଲା । ଆମର ସାହାଯ୍ୟରେ ଇଂରେଜମାନେ ଜିତିଗଲେ ।

ଗାନ୍ଧୀଜୀ ବଡ଼ଲାଟଙ୍କୁ କହିଲେ—"ଯୁଦ୍ଧ ଶେଷ ହେଲା । ତୁମର ଜୟ ହେଲା । ତୁମେ ଆମକୁ ଏତେ ଦଶା କରିଥିଲ । ସେ ସବୁ ଭୁଲି ବିପଦବେଳେ ତୁମ ପାଖରେ ଆମେ ଠିଆହେଲୁ । ଆମକୁ ବଚନ ଦେଇଥିଲ ଯେ ଯୁଦ୍ଧ ଶେଷରେ ଆମ ଦେଶର ମାଲିକ ଆମେ ହେବୁ । ଏଥରକ ସେଇ କଥା ହେଉ । ଆମ କଥା ରଖି ମୁଁ ତ ପୁଣି ତୁମ ପାଇଁ ସୈନ୍ୟ ସଂଗ୍ରହ କରାଇ-ଥିଲି ।

ଏଇଠି ତାଙ୍କ ଆଖି ଖୋଲିଗଲା । ସ୍ୱରାଜ୍ୟ ହେବା ତ ଦୂରର କଥା—ସରକାର ଏମିତିକା ନୂଆ ଆଇନ କରିଦେଲେ ଯେ ଆମ ଲୋକେ ଯେମିତି ଆଉ ଶହ ଶହ ବର୍ଷ ପର୍ଯ୍ୟନ୍ତ ଜବତ ହୋଇ ରହିଥିବେ । ସେ ଦେଖିଲେ ଆଉ ସହିହେବ ନାହିଁ । ସରକାରଙ୍କୁ ଶୁଣାଇ ଦେଲେ—"ଦେଖ, ଆମେ ଏଣିକି ତୁମ ସଙ୍ଗରେ ଲଢ଼େଇ କରିବୁ । ହାତହତିଆର ଧରି ନୁହେଁ—ଆଫ୍ରିକାରେ ଯେମିତି କରିଥିଲୁ, ଏଠି ଠିକ୍ ସେମିତି କରିବୁ । ଆମ ଦେଶକୁ

ତୁମ ହାତରୁ ଆମେ ଅଳବତ୍ ନେବୁ । ତୁମେ ଆମକୁ ମାର, ପିଟ, ଜେଲ୍ ଦିଅ, ଫାଶୀ ଦିଅ—ଯାହା କର ପଛକେ ଆମେ ଛାଡ଼ିବୁ ନାହିଁ ।



[ ସୈନ୍ୟ ସଂଗ୍ରହ ବେଳେ ]

ଏ ନଦେଶର ଅନେକ ଲୋକଙ୍କ ମନ ମାନୁ ନ ଥାଏ । ସରକାରଙ୍କର କେତେ ଫଉଜ, କେତେ ହାତହତିଆର ଅଛି । ଜର୍ମାନୀ ଭଳି ଜାତିକୁ ହରାଇ ଦେଇଛନ୍ତି । ଗାନ୍ଧୀଙ୍କ ହାତରେ ଠେଙ୍ଗାଖଣ୍ଡେ ମଧ୍ୟ ନାହିଁ । ସେଥିରେ ପୁଣି ଲଢ଼େଇ ହେବ କେମିତି !



ସମସ୍ତଙ୍କୁ ସେ ଗୋଟିଏ ଉତ୍ତର ଦେଲେ, "ମୋ ହାତରେ ଗୋଟାଏ ନୂଆ ହତିଆର ପଡ଼ିଛି । ତା ନା 'ଅହିଂସା ।' ତା' ଆଗରେ ଗୁଳି କମାଣ କିଛି କାମ ଦେବ ନାହିଁ । "ଅଭୟ-ପୋଷାକ" ପିନ୍ଧି "ଅହିଂସା-ଅସ୍ତ୍ର" ଧରିଲେ ଏ ଦେଶରୁ ଆମେ ଇଂରେଜଙ୍କୁ ନିଶ୍ଚୟ ବିଦା କରିଦେବା ।

ଏଇ କଥାର ଅସଲ ମରମ ବୁଝିବା ଆମ ଲୋକଙ୍କ ପକ୍ଷରେ ସେତେ ସହଜ ନ ହେଲେ ମଧ୍ୟ ଗାନ୍ଧୀଜୀଙ୍କୁ ନେତା ବୋଲି ସମସ୍ତେ ମାନିନେଲେ । ନରମା କଂଗ୍ରେସ ଭିତରକୁ ମୋହନଦାସ ପଶିଗଲାରୁ ସେହି କଂଗ୍ରେସ ନୂଆ ଜୀବନ ପାଇଲା । ହଜାର ହଜାର ଲୋକ ସେଥିର ସଭ୍ୟ ହୋଇଯାଇ ତା ମୂଳଦୁଆ ଟାଣ କରିଦେଲେ ।

ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କୁ ଦେଶରେ ଆଉ 'ଗାନ୍ଧୀଜୀ' ନ ଡାକି ସମସ୍ତେ 'ମହାତ୍ମା' ବୋଲି କହିଦେଲେ । ଲକ୍ଷ ଲକ୍ଷ ଲୋକଙ୍କ ମୁହଁରୁ ଶୁଣାଗଲା 'ମହାତ୍ମା ଗାନ୍ଧୀ କୀ ଜୟ ।' ଯିଏ ଖୁବ୍ ଭଲ କାମ କରେ, ନିଜକୁ ଭୁଲି ଅନ୍ୟ ପାଇଁ ସବୁ ସମୟ ଦେଇଦିଏ, ମିଛ ପାଖ ମୁଦ୍ଧା ମାଡ଼େ ନାହିଁ, ଅନ୍ୟାୟ କରେ ନାହିଁ—ତାକୁ ଲୋକେ କୁହନ୍ତି ମୁନି, ଋଷି, ମହାତ୍ମା । ଦେଶରେ ଗୁରିଆଡ଼େ ଚହଳ ପଡ଼ିଗଲା । ବହୁଯୁଗ ପରେ ଆମ ଦେଶରେ ଜଣେ ମହାତ୍ମା ଜନ୍ମ ହୋଇଛନ୍ତି । ସେ ଯେ ଦେଶର ନେତା ହେଲେ, ମୁରବି ହେଲେ—ଏଇ କଥାର ପ୍ରମାଣସ୍ୱରୂପ ତାଙ୍କ ବେକରେ ସମସ୍ତେ ଫୁଲମାଳ ପିନ୍ଧାଇଦେଲେ । ନିଜର ଗୁରିପୁଅ ଥିଲେ ମଧ୍ୟ ତାଙ୍କ ପାଖକୁ ଯେଉଁ ଲୋକ ଗଲା, ତାକୁ ସେ ପୁଅଭଳି ସ୍ନେହ କଲେ । ସମସ୍ତେ ଭାବିଲେ

ଏଇ ହେଉଛନ୍ତି ବାପଭଳି ମୁରବି । ତେଣୁ ତାଙ୍କୁ ବାପା ବୋଲି ଡାକିଲେ । ଗୁଜୁରାଟି ଭାଷାରେ ବାପାଙ୍କୁ କୁହନ୍ତି 'ବାପୁ' । ଶେଷରେ ଲକ୍ଷ ଲକ୍ଷ ଲୋକ ଆଉ 'ମହାତ୍ମା' ବା 'ଗାନ୍ଧୀଜୀ' ନ କହି 'ବାପୁ' ନାଁକୁ ଆଦରିଗଲେ ।

ଯେଉଁ ଜାତି ପୃଥିବୀ-ମହାଯୁଦ୍ଧରେ ଜୟୀ ହୋଇଛି, ସେହି ଜାତିକୁ ଗାନ୍ଧୀଙ୍କ କଥାରେ ଭାରତର ଲୋକେ ବେଖାତିର କରୁଛନ୍ତି !—ଏଇ କଥା ଗୋରା ଶାସକମାନେ ଆଦୌ ବରଦାସ୍ତ କରି ପାରିଲେ ନାହିଁ । ମୂଳରୁ ଦେଶୀ ଲୋକଙ୍କୁ ଏମିତିକା ମାଡ଼ ଦିଆଯିବ ଯେ ଦେଶଯାକ ଡରିଯିବେ—ଏଇଆ ହେଲା ସେମାନଙ୍କର ଚିନ୍ତା ।

ପଞ୍ଜାବର ଜାଲିଆନାୱାଲାବାଗ ବୋଲି ଗୋଟିଏ ସ୍ଥାନରେ ମେଳା ହେଉଥିଲା । ହଜାର ହଜାର ଲୋକ ଜମା ହୋଇଥିଲେ । ଦଳେ ଗୋରା-ଫଉଜ ସାଙ୍ଗରେ ନେଇ ସେଇଠିକି ପଠାଇ ଦିଆହେଲା ଜଣେ ଫଉଜ ଅଫିସରଙ୍କୁ । ତାଙ୍କ ନାମ ଡାୟାର୍ । ଭାରତୀୟମାନେ ଉପଯୁକ୍ତ ଶିକ୍ଷା ପାଆନ୍ତୁ ବୋଲି କହି ସେ ନିରୀହ ଲୋକଙ୍କ ଉପରେ ଗୁଳି ଚଳାଇଦେଲେ । ଶହ ଶହ ଲୋକ ଢଳିପଡ଼ିଲେ; ବହୁତ ଲୋକ ଆହତ ହେଲେ । ମନୁଷ୍ୟ-ରକ୍ତର ସୁଅ ବହିଲା । 'ଲୋକେ ସବୁଦିନ ପାଇଁ ଡରିଯିବେ'—ବୋଲି ମନର ସନ୍ତୋଷରେ ଡାୟାର୍ ସାହେବ ଫେରିଯାଇ ତାଙ୍କ ସାଙ୍ଗ ଗୋରା ହାକିମମାନଙ୍କ ଆଗରେ ବାହାଦୁରି ଦେଖାଇଥିବେ ।



କିନ୍ତୁ ଓଲଟା ଫଳ ହେଲା । ଏ ଖବରରେ ଲୋକେ ଆହୁରି ତେଜି ଉଠିଲେ । ଚାରିଆଡ଼େ ହରତାଳ ସଭା-ସମିତି ହେଲା । ବାପୁଜୀ କହିଦେଲେ, ଏଇ ସଇତାନ ସରକାରକୁ ଏ ଦେଶରୁ ଅବଶ୍ୟ ତଡ଼ିବୁ । ଏ ସରକାର ସହିତ ଆମର ସମ୍ପର୍କ ତୁଟିଲା । ଅତ୍ୟାଚାରୀଙ୍କ ସହିତ ସହଯୋଗ ଅସମ୍ଭବ । ଏମାନଙ୍କ ସ୍କୁଲ କଲେଜକୁ ପିଲା ପଠାଇବା ନାହିଁ, ଏମାନଙ୍କ କଚେରୀକୁ ଓକିଲ ଯିବେ ନାହିଁ । ଏହି ସରକାରର ଏ ଦେଶରେ ଆଉ ଇଜ୍ଜତ ନାହିଁ । ଚାଲିଲା "ଅସହଯୋଗ ଆନ୍ଦୋଳନ ।"

[ମୋ ସାଙ୍ଗରେ ଆ...

ଦେଶର ବହୁ ବଡ଼ ବଡ଼ ଓକିଲ ଓକିଲାତି ଛାଡ଼ିଦେଲେ । ସରକାର ଯେଉଁସବୁ ଉପାଧି ଦେଇଥିଲେ, ବହୁ ଲୋକ ସେସବୁ ଉପାଧି ଫେରାଇ ଦେଲେ । ସ୍କୁଲ-କଲେଜରୁ ଶହ ଶହ ଛାତ୍ର ବାହାରି ଆସିଲେ । ଯେଉଁମାନେ ସରକାରୀ ଚାକିରି କରି ସରକାରଙ୍କୁ ସାହାଯ୍ୟ କଲେ, ସେମାନଙ୍କର ନିନ୍ଦା ହେଲା । ହଜାର ହଜାର ସ୍ଥାନରେ ସଭା ହୋଇ ସରକାରର ନିନ୍ଦା କରାଗଲା । ମୋଟ ଉପରେ ଲୋକଙ୍କ ମନରୁ ଭୟ କମିଗଲା ।

ଦେଶର ଚାରିଆଡ଼େ ଗିରଫ ଚାଲିଲା । ଲୋକେ ହସି ହସି ଜେଲ ଭିତରେ ପଶିଲେ । ଜେଲ ଭିତରେ ଯେତେ କଷ୍ଟ ଦେଲେ ମଧ୍ୟ କର୍ମୀମାନେ ଡରିଲେ ନାହିଁ । ଆନ୍ଦୋଳନ ଦବିଲା ନାହିଁ । ବାପୁଜୀଙ୍କୁ ଗିରଫ କରି ନିଆଗଲା ଓ ଛ' ବର୍ଷ ଜେଲଦଣ୍ଡ ମିଳିଲା । ତାଙ୍କୁ ଛ'ବର୍ଷଯାକ ଜେଲରେ ରହିବାକୁ ପଡ଼ିଲା ନାହିଁ; ଦୁଇବର୍ଷ ପରେ ଖଲାସ କରି ଦିଆହେଲା । ଅନ୍ୟମାନେ ମଧ୍ୟ ଜେଲରୁ ବାହାରିଲେ ।

ଆଉ ନିଶ୍ଚିନ୍ତ ହୋଇ ବସିବାର କଥା ନାହିଁ । ସ୍ୱରାଜ୍ୟ ହାସଲ କରିବାକୁହିଁ ହେବ—ଇଂରେଜମାନେ ଏ ଦେଶରୁ ଯିବେ—ଏହି ହେଲା ଲକ୍ଷ୍ୟ । ସ୍ୱରାଜ୍ୟ ଲଢ଼େଇ ପାଇଁ ସୈନ୍ୟ ତାଲିମ କରିବାକୁ ହେବ । ଇଏ ତ ନୂଆ ପ୍ରକାରର ଯୁଦ୍ଧ । ଏଥିପାଇଁ ନୂଆ ଢଙ୍ଗରେ କେମିତି ଯୋଦ୍ଧା ତିଆରି କରିବାକୁ ହେବ, ସେହି କଥା ବାପୁଜୀ ବତାଇଲେ ।

✓ ଏ ଦେଶର ଲୋକେ ବିଦେଶୀ ଲୁଗା ପିନ୍ଧିବେ ନାହିଁ । ବିଲାତର ବେପାରୀମାନେ ଏହି ଦେଶରେ ବିଲାତି ଲୁଗା ଚଳାଇବେ ବୋଲି ଆମ ତନ୍ତୀକୁଳକୁ ନାଶ୍ ହିନସ୍ତ କରି ନାହାନ୍ତି । ଆମ ଉପରେ ଜବରଦସ୍ତ ଆଣି ତାଙ୍କ ଲୁଗା ଲଦିଛନ୍ତି । ଆମେ ପ୍ରଥମେ ସେହି ଲୁଗା ଛାଡ଼ିବା । ନିଜ ହାତରେ ସୂତା କାଟି, ଲୁଗା ବୁଣାଇ ପିନ୍ଧିବା । ଆମେ କପାଚାଷ କରିବା—ସେଇ କପାକୁ ନେଇ ସେମାନେ ବିଲାତରେ ଲୁଗା ବୁଣାଇ ଆମକୁ ଆଣି ପୁଣି ବିକିବେ ! ଏ କଥା ଚାଲିବ ନାହିଁ । ଦେଶରେ ଅରଟ ଚାଲିଲା—ସୂତା କଟା ହେଲା । ତନ୍ତୀ ଲୁଗା ବୁଣିଦେଲେ । ସେହି ଲୁଗାକୁ ଖଦଡ଼ ବା ଖଦି ବୋଲି କୁହାଗଲା । ପୁଲିସମାନେ ଯେମିତି ଖାକି ପୋଷାକ ପିନ୍ଧନ୍ତି, ସ୍ୱରାଜ ଲଢ଼େଇର



ଯୋଦ୍ଧାମାନେ ସେମିତି ଖଦଡ଼ ପିନ୍ଧିଲେ । ଖଦଡ଼ ହେଲା ଆମ ଦେଶପ୍ରେମର ପୋଷାକ । ସେହି ଲୁଗା ପିନ୍ଧି ଆମେ ଦେଖାଇଦେଲୁ ଯେ ଇଂରେଜମାନଙ୍କ ଅତ୍ୟାଚାରର ବିରୋଧ କରୁଛୁ । ଏହା ସଙ୍ଗେ ସଙ୍ଗେ ବହୁ ଗରିବ ଲୋକ କାମ ପାଇଗଲେ । ଆମ ଦେଶର ସମ୍ପଦ ବଢ଼ିଲା । ବିଲାତି ଲୁଗା ଏ ଦେଶରେ ଗୋଲାମୀର ପୋଷାକ ବୋଲି କହି-ଦିଆହେଲା । ସ୍ଥାନେ ସ୍ଥାନେ ସେହି ଲୁଗା ପୋଡ଼ାହେଲା । "ଫିଙ୍ଗ ରେ ଆଜି ପୂଳକ ପରାଏ ବିଦେଶୀ ବସନ ଭାଇ—ଅଙ୍ଗକୁ କର ପବିତ୍ର ତୁମର ଜାତୀୟ ସଙ୍ଗୀତ ଗାଇ"—ଏହି ଗୀତ ଗାଇ ଗାଇ ବିଲାତି ଲୁଗା ସଂଗ୍ରହ କରି ସଭା ସମିତିରେ ସେଥିରେ ନିଆଁ ଲଗାଇ ଦିଆଗଲା । ଖଦଡ଼ ପିନ୍ଧିଲେ ପଡ଼ୋଶୀ-ପ୍ରୀତି—ଦେଶପ୍ରୀତି ବଢ଼ିବ ବୋଲି ବୁଝିବାକୁ ଆଉ ବାକି ରହିଲା ନାହିଁ ।

ଯେଉଁ ଚିଜ ଆମ ଦେଶରେ ହେଉଛି ତାକୁ ଖୋଜି ଖୋଜି ବ୍ୟବହାର କର, ବିଲାତି ଚିଜ ପାଖ ମାଡ଼ ନାହିଁ । ସେମିତି କଲେ ଆମ କାରିଗରଙ୍କୁ ସାହାଯ୍ୟ ମିଳିବ—ସେମାନେ ଆହୁରି ଭଲ ଚିଜ ତିଆରି କରିବେ । ଏହି ହେଲା ବାପୁଜୀଙ୍କ ଉପଦେଶ । ଦେଶରେ ଖଦି ଆନ୍ଦୋଳନ—ସ୍ୱଦେଶୀ ଆନ୍ଦୋଳନ ଚାଲିଲା ।

ଏଣେ ବିଲାତ ସରକାରଙ୍କୁ ବୁଝାଇ କୁହାଯାଉଥାଏ—'ତୁମ ସହିତ ଆମେ ପୁରାପୁରି ସମ୍ପର୍କ ତୁଟାଇ ଦେବାକୁ କହୁନାହୁଁ । ଆମ ହାତକୁ ଦେଶ ଚଳାଇବାର କ୍ଷମତା ଦେଇଦିଅ; ତେଣିକି ତୁମ ଦେଶର ଆମ ଦେଶର ସଂପର୍କ ଭଲ ରହିବ ।' ସେମାନେ କିନ୍ତୁ ସେଥିପ୍ରତି କାନ ଦେଉ ନ ଥାନ୍ତି । ଶେଷକୁ କହିଦିଆହେଲା—'୧୯୨୯ ଡିସେମ୍ବର ଏକତିରିଶ ତାରିଖ ରାତି ବାରଟା ସୁଦ୍ଧା ଯଦି ଆମ ଦାବୀ ଗ୍ରହଣ ନ କରିବ, ତେବେ ଆମେ ଘୋଷଣା କରିଦେବୁ ଯେ ଭାରତ ପୂର୍ଣ୍ଣ ସ୍ୱାଧୀନ । ସେହି ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ଆମେ ଅହିଂସା-ଯୁଦ୍ଧ ଚଳାଇବୁ ।'

ଲାହୋରଠାରେ ୧୯୨୯ ଡିସେମ୍ବର ଏକତିରିଶ ତାରିଖ ଦିନ କଂଗ୍ରେସ ବସିଥାଏ । ରାତି ବାରଟା ସୁଦ୍ଧା ଯେତେବେଳେ ବଡ଼ଲାଟଙ୍କଠାରୁ କୌଣସି ଉତ୍ତର ଆସିଲା ନାହିଁ, ସେଇଠାରେ ଘୋଷଣା କରିଦିଆଗଲା ଯେ "ଭାରତ ପୂର୍ଣ୍ଣ ସ୍ୱାଧୀନ ହେବ ।"

ପୂର୍ଣ୍ଣ ସ୍ୱରାଜ୍ୟ ପାଇଁ କି ଧରଣର ଅହିଂସା-ଯୁଦ୍ଧ ହେବ, ସେ ବିଷୟରେ ନିଷ୍ପତ୍ତିର ଭାର ରହିଲା ଗାନ୍ଧୀଜୀଙ୍କ ଉପରେ । ଅନ୍ୟମାନେ କେବଳ ପ୍ରସ୍ତୁତ ହୋଇ ରହିଥାଆନ୍ତି ।

ଦିନେ ସେ ଘୋଷଣା କଲେ—'ଏ ସରକାରର ଅନ୍ୟାୟ ଆଇନ-ଗୁଡ଼ାକ ଆମେ କଦାପି ମାନିବା ନାହିଁ । ନିଜ ସୁବିଧା ନିମନ୍ତେ ଏ ଦେଶକୁ ଶୋଷିବା ପାଇଁ ବିଦେଶୀ ସରକାର ଆମ ଦେଶରେ କେତେଗୁଡ଼ାଏ ଅତି ଅନ୍ୟାୟ ଆଇନ ଜାରି କରିଛି । ଗୋଟିଏ ଗୋଟିଏ କଥାରୁ ଜାଣିହୋଇଯିବ, ଏ ସରକାରର ମତଲବ କେମିତି ଖରାପ । ଆମ ଦେଶକୁ ସମୁଦ୍ର ଲାଗିଛି । ସେଇ ସମୁଦ୍ର ପାଣିରୁ ଲୁଣ ମାରି ଆମେ ଖାଇପାରନ୍ତେ । ସମସ୍ତଙ୍କର ଏହି ଠକଟି ଲୋଡ଼ା । ସରକାର କାହିଁକି ଆଇନ କରିଦେବ ଯେ ତା'ଠାରୁ ଅନୁମତି ନ ନେଲେ କେହି ଲୁଣ ମାରିପାରିବେ ନାହିଁ ? ଏଭଳି ଆଇନ ଆମେ ମାନିବା ନାହିଁ । ସମୁଦ୍ରକୁ ତ ବିଲାତ ସରକାର ଆସି ତିଆରି କରି ନ ଥିଲେ । ଆମେ ଲୁଣ ମାରିବା ।'

ସାବରମତୀ ଆଶ୍ରମରୁ ଦଳେ କର୍ମୀଙ୍କୁ ସାଙ୍ଗରେ ନେଇ ସେ ଚାଲିଲେ ସରକାରର ଅନ୍ୟାୟ ଆଇନ ଅମାନ୍ୟ କରି ଲୁଣ ମାରିବା ପାଇଁ । ସରକାର ବିରୁଦ୍ଧରେ 'ସତ୍ୟାଗ୍ରହ' କରାଯାଉଛି ବୋଲି ଘୋଷଣା କରିଦେଲେ । ଦେଶର ସବୁଆଡ଼େ, ବିଦେଶରେ ଖବର ଖେଳିଗଲା—ଭାରତରେ "ଲବଣ ସତ୍ୟାଗ୍ରହ" ଆରମ୍ଭ ହୋଇଗଲାଣି ।

ପୁଣି ଧରପକଡ଼, ଗୁଳିମାଡ଼ ଚାଲିଲା । ହଜାର ହଜାର ଲୋକ ଜେଲ ଗଲେ । ଘରର ସ୍ତ୍ରୀଆଣ୍ଡିରାଣୀମାନେ ବାହାରି ଆସିଲେ ଆଇନ ଅମାନ୍ୟ କରି ଜେଲ ଯିବା ପାଇଁ । କେବଳ ଯେ ଲୁଣ ମରାହେଲା ତା ନୁହେଁ; ଅଫିମ ଗଞ୍ଜେଇ, ମଦ ଦୋକାନ ଆଗରେ ପିକେଟିଂ ଚାଲିଲା । ଲୋକଙ୍କୁ ନିଶା ଖୁଆଇ ସରକାର ଟାଣୁଛି ଟଙ୍କା—ଏଣେ ଗରିବ ଲୋକେ ତଳତଳାନ୍ତ ହେଉଛନ୍ତି ।

ନିଶା ଦୋକାନ ଆଗରେ ଠିଆହୋଇ ଲୋକଙ୍କୁ ମନା କରାଗଲା ନିଶା କିଣିବା ପାଇଁ। ତାହାର ନାଁ 'ପିକେଟିଂ'। ନିଶା ଖାଅ ନାହିଁ ବୋଲି ଯିଏ କହିଲା, ପୋଲିସ ତାକୁ ମାଡ଼ ଦେଲେ, ଜେଲରେ ପୂରାଇଦେଲେ।

ଓଡ଼ିଶାରେ ଏହି ଆନ୍ଦୋଳନ ଗୋଟାଏ ନୂଆ ରୂପ ନେଲା। ବହୁ ସଂଖ୍ୟାରେ ବାର, ଚଉଦ, ପନ୍ଦର ବର୍ଷର ପିଲା ପିକେଟିଂ କରିବାକୁ ବାହାରି ଆସିଲେ। ସେମାନେ ଯେତେବେଳେ ବିଲାତି ଲୁଗା, ଅଫିମ, ମଦଦୋକାନରେ ପିକେଟିଂ କରନ୍ତି, ପୋଲିସ ସେମାନଙ୍କୁ ଘୋଷାରି ଘୋଷାରି ନେଇଯାଆନ୍ତି। ଦେହହାତ ଛିଣ୍ଡି ରକ୍ତ ବହିଯାଉଥାଏ। ଶହ ଶହ ଦେଖଣାହାରି 'ମହାତ୍ମା ଗାନ୍ଧୀ କି ଜୟ' ଧ୍ୱନି କରି ଆଖିରୁ ଲୁହ ଗଡ଼ାଉ ଥାଆନ୍ତି। ଏତେ ପିଲାଙ୍କୁ ଜେଲ୍‌କୁ ନେବା ସୁବିଧା ନ ଦେଖି କଚେରିରେ ସେମାନଙ୍କ ହାତରେ ବେତମାଡ଼ ହେଲା। "ଭାଇ ମାରି କେତେ ବେତ ମାରିବ;—ଜୀବନକୁ ଆମେ ପାଣି ଛଡ଼ାଇଛୁ ତୁମେ କି ଆମକୁ ପାରିବ" ବୋଲି ଗୀତ ଗାଇ ସେମାନେ ବେତମାଡ଼ ଖାଉଥାଆନ୍ତି। କଚେରି ଭିତରେ ଓ ବାହାରେ ଶହ ଶହ ହଜାର ହଜାର ଲୋକ ଏ ଦୃଶ୍ୟ ଦେଖନ୍ତି। ପିଲାଙ୍କ ହାତପାପୁଲି ବେତ-ମାଡ଼ରେ ଫୁଲିଯାଏ, ଫାଟି ରକ୍ତ ବାହାରେ। ହାତ ଦରଜ କମିଲେ, ଘା' ଶୁଖିଗଲେ ସେମାନେ ପୁଣି ଆସି ପିକେଟିଂ କରନ୍ତି। ଲୋକେ ଏଇମାନଙ୍କ ନାମ ଦେଇଥାଆନ୍ତି 'ବାନରସେନା'। ରାମଚନ୍ଦ୍ରଙ୍କୁ ବାନରମାନେ ଯେପରି ସାହାଯ୍ୟ କରୁଥିଲେ, ମହାତ୍ମା ଗାନ୍ଧୀଙ୍କୁ ଏମାନେ ସେହିପରି ସାହାଯ୍ୟ କରୁଛନ୍ତି ବୋଲି ଲୋକେ କୁହାକୁହି ହୁଅନ୍ତି।

ସରକାର ଦେଖିଲେ ଯେ ଲୋକଙ୍କ ଭିତରେ ତାଙ୍କପ୍ରତି ଅଶ୍ରଦ୍ଧା ବଢ଼ୁଛି। ଏମିତି ବା କେତେ ଦିନ ଚାଲିବ ? ବର୍ଷକ ପରେ ଗୋଟାଏ ସନ୍ଧି କଲେ, ଯେତେ ଲୋକଙ୍କୁ ଜେଲକୁ ନେଇଥିଲେ ସେମାନଙ୍କୁ ଖଲାସ କରିଦେଲେ। ବିଲାତରେ ଗୋଟିଏ ବୈଠକ ଡାକିଲେ। ସେହି ବୈଠକକୁ ବାପୁଜୀ ଯିବେ, ଆଉ କେତେକ ନେତା ମଧ୍ୟ ଯିବେ। ସେହିଠାରେ ବସି ଭାରତକୁ କେମିତି ଅସଲ କ୍ଷମତା ମିଳିବ, ସେହି ବିଷୟରେ ଆଲୋଚନା ହୋଇ ସ୍ଥିର ହେବ।

ମହାତ୍ମା ଗାନ୍ଧୀ ବିଲାତ ଗଲେ। ସେଠି ଯେଉଁ ବୈଠକ ହେଲା, ତା' ନାଁ 'ଗୋଲଟେବୁଲ ବୈଠକ'। ବହୁ ଦିନଧରି ଆଲୋଚନା ହେଲା।

ଶେଷରେ କିଛି ଫଳ ହେଲା ନାହିଁ । ବିଲାତ ସରକାର ଅସଲ କଥାବେଳକୁ ଧରାଛୁଆଁ ଦିଅନ୍ତି ନାହିଁ । ଭାରତରୁ କେତେ ଜଣ ଖୁସାମତିଆ ଲୋକଙ୍କୁ ମଧ୍ୟ ସେହି ବୈଠକକୁ ଡାକ ନେଇ ଥାଆନ୍ତି ! ସେମାନେ ବିଲାତ ସରକାରଙ୍କ କଥାରେ ହଁ ମାରନ୍ତି । ବାପୁଜୀ ଦେଖିଲେ ଯେ ସେଠି ବସି ସମୟ ନଷ୍ଟ କର କିଛି ଲାଭ ନାହିଁ; ଫେରିଆସିଲେ ।

ଇଂରେଜ ସରକାର ପାଗଳଭଳି ହୋଇ ପୁଣି ଗିରଫ, ମାଡ଼, ଗୁଳି ଚଳାଇଲା । ମୃତ୍ୟୁର ସେହି ମତ; ଅଳ୍ପଦିନ ଭିତରେ ଜେଲ ଭିତରେ ହଜାର ହଜାର ଲୋକ । ବାପୁଜୀ ମଧ୍ୟ ବନ୍ଦୀ ହୋଇଥାଆନ୍ତି ।



[ ଅନ୍ଧାରକୁ ଆଲୁଅ କରିଦେଲେ ]

ସବୁ ଦେଶରେ ସ୍ୱରାଜ୍ୟ ଲଢ଼େଇରେ ଜୁଆର ଭଟ୍ଟା ହୋଇଥାଏ । କ୍ରମେ ଆମ ଲଢ଼େଇ ଧିମେଇ ଗଲା ।

ମହାତ୍ମାଜୀ ଜେଲରୁ ବାହାରି ଦେଶର ଚୁଟିଆଡ଼େ ବୁଲିଲେ । ଲୋକଙ୍କ ଭିତରେ ପୁଣି ଉତ୍ସାହ ଖେଳିଗଲା । ୧୯୩୪ରେ ସେ ଆମ ଓଡ଼ିଶାରେ ମାସକରୁ ବେଶି ରହିଥିଲେ । ମାସକଯାକ ସେ ରେଳ ମଟରରେ ନ ବସି ଚାଲି ଚାଲି ଗାଁକୁ ଗାଁ ଯାଉଥିଲେ । ପୁରୀରୁ ବାହାରି ଭଦ୍ରଖ ପର୍ଯ୍ୟନ୍ତ ଯାଇଛନ୍ତି । ତାଙ୍କ ସାଙ୍ଗରେ ସେହି ପଦଯାତ୍ରାରେ ହଜାର ହଜାର ଲୋକ ଚାଲିଥାଆନ୍ତି । ଯେଉଁଠିକି ଯାଆନ୍ତି, ସେଠାରେ କୁହନ୍ତି—"ମନୁଷ୍ୟକୁ ଅଛୁଆଁ କରି ରଖିବା ପାପ । ବ୍ରାହ୍ମଣ କରଣ, ଯେମିତି ମଣିଷ—ପାଣ ହାଡ଼ି ତ ସେମିତି ମନୁଷ୍ୟ; ତେଣୁ ସେମାନଙ୍କୁ ଅଛୁଆଁ କରି ରଖିବାଟା ନିଶ୍ଚୟ ପାପ । ଏହି ପାପ କେବେହେଲେ କରି ନାହିଁ ।"

ଏ ଦେଶରେ କାମ ଆରମ୍ଭ କଲାପରେ ବାପୁଜୀ ଗୋଟିଏ କଥା ଦେଖିଲେ । ସେ ତ ନୂଆ ନୂଆ କଥା କହୁଛନ୍ତି । ଲଢ଼େଇ ହେବ; ଅଥଚ ଶତ୍ରୁକୁ ମାରିବ ନାହିଁ । ଇଂରେଜମାନେ ଆମର ଶତ୍ରୁ, ଆମ ଦେଶକୁ ଜବରଦସ୍ତ ମାଡ଼ି ବସିଛନ୍ତି, ସ୍ୱରାଜ୍ୟ ଦେଉ ନାହାନ୍ତି; ତେବେ ବି ତାଙ୍କୁ ଆମେ ଘୃଣା କରିବା ନାହିଁ ! ଲୋକେ ଅନେକ ଦିନୁ ଖଦି ଛାଡ଼ିଲେଣି, ମିଲ୍‌ଲୁଗା



[ କୁଷ୍ଠରୋଗୀଙ୍କ ସେବା ]

ପିନ୍ଧିଲେଣି—କିନ୍ତୁ ଏଣିକି ଅରଟରେ ସୂତା କାଟି ଖଦିଲୁଗା ପିନ୍ଧିବେ । ପାଣ ହାଡ଼ିଙ୍କୁ ଛୁଇଁବା ପାଇଁ ଲୋକେ ନାରାଜ—ବାପୁଜୀ କହୁଛନ୍ତି, ସେମାନଙ୍କୁ ଆଣି ଘରେ ନିଜର ଭଳି ରଖ । ଏହିସବୁ କଥା ଲୋକମାନଙ୍କୁ ବୁଝାଇବ କିଏ ?

ସେ ଭାବିଲେ, କେତେକ ଲୋକଙ୍କୁ ତାଲିମ କରିବେ । ସେମାନେ ନିଜେ ସୂତା କାଟି ଲୁଗା ପିନ୍ଧିବେ; ଛୁଆଁ-ଅଛୁଆଁ ମାନିବେ ନାହିଁ । ଶତ୍ରୁକୁ ମଧ୍ୟ ଘୃଣା କରିବେ ନାହିଁ । ଲୋକେ ସରକାର ସଙ୍ଗରେ କିଭଳି ଲଢ଼ିବେ, ସେ କଥା ଶିଖାଇବେ । ସେହିମାନଙ୍କ ଉଦ୍ଦେଶ୍ୟରେ ଗୁଜୁରାଟର ସାବରମତୀ

କୋଚିକୁଲରେ ଗୋଟିଏ ଆଶ୍ରମ ଖୋଲିଥିଲେ । ଆଶ୍ରମରେ ଆପଣା-ପର ଭେଦ ନ ଥାଏ; ସମସ୍ତେ ସବୁ କାମ ହାତରେ କରନ୍ତି । ଚାକରବାକର ରହନ୍ତି ନାହିଁ । ପାଇଖାନା ସଫା କରିବା ପାଇଁ ମେହେନ୍ତର ନ ଥାନ୍ତି—ସମସ୍ତେ ପାଇଖାନା ସଫା କରନ୍ତି । ହାତରେ ତୁଳାଭୁଣି, ସୂତା କାଟି ଲୁଗା ବୁଣନ୍ତି । ରୋଗୀସେବା ଶିଖନ୍ତି । ଭଲ ଚାଷ କରନ୍ତି । ତାହା ସଙ୍ଗେ ସଙ୍ଗେ ପଢ଼ାପଢ଼ି କରି ଯୋଗ୍ୟ ହୁଅନ୍ତି । ସେଠାରେ ବହୁ କର୍ମୀ ତାଲିମ ପାଇ ଦେଶର ଚାରିଆଡ଼େ ଖଦଡ଼ କେନ୍ଦ୍ର ଓ ଆଶ୍ରମ ଖୋଲିଛନ୍ତି । ସାବରମତୀ ଆଶ୍ରମ ଥିଲା ବାପୁଜୀଙ୍କ ରହିବା ସ୍ଥାନ ।

୧୯୩୦ ସାଲରେ ସେ ଯେତେବେଳେ ସାବରମତୀ ଆଶ୍ରମରୁ ଲୁଣ ମାରିବାକୁ ବାହାରିଲେ, ସେତେବେଳେ କହିଲେ—'ମୁଁ ଯାଉଛି ସ୍ୱରାଜ୍ୟ ହାସଲ ପାଇଁ । ଯେ ପର୍ଯ୍ୟନ୍ତ ସ୍ୱରାଜ୍ୟ ନ ମିଳିବ, ମୁଁ ଆଉ ଏହି ସାବରମତୀ ଆଶ୍ରମକୁ ଫେରିବି ନାହିଁ ।' ଲବଣ ସତ୍ୟାଗ୍ରହ ପରେ ତ ସ୍ୱରାଜ୍ୟ ମିଳି ନ ଥାଏ । ତେଣୁ ସେ ସାବରମତୀକୁ ନ ଫେରି ଓ୍ୱାର୍ଦ୍ଧାଠାରେ ରହିଲେ । କିଛିଦିନ ପରେ ଓ୍ୱାର୍ଦ୍ଧା ନିକଟରେ ସେବାଗ୍ରାମ ବୋଲି ଆଉ ଏକ ଆଶ୍ରମ ଗଢ଼ିଉଠିଲା । ସେହିଠାରେ ଶହ ଶହ ଲୋକ ତାଲିମ ପାଇଲେ ।

ଏମିତି ଦିନ ଚାଲିଥାଏ । ପୁଣି ଲାଗିଲା ଜର୍ମାନୀ ସହିତ ଇଂଲଣ୍ଡର ଯୁଦ୍ଧ । ହିଟଲର୍ ମହାପ୍ରତାପୀ ହୋଇଉଠିଥାଏ । ଜର୍ମାନୀର ପ୍ରକୋପରେ ଇଉରୋପ ଥରହର । ବିଲାତ ସରକାରଙ୍କ ପରାମର୍ଶରେ ବଡ଼ଲାଟ ଡକାଇଲେ ବାପୁଜୀଙ୍କୁ । ସେହି ପୁରୁଣା କଥା—'ଆମକୁ ସାହାଯ୍ୟ କର ।'

ଏଥର କିନ୍ତୁ ବାପୁଜୀ ଅନ୍ୟରକମ କହିଲେ । ସେ ଧୀରସ୍ଥିର ଭାବରେ ବଡ଼ଲାଟଙ୍କୁ ବୁଝାଇଲେ—"ଆମେ ତୁମକୁ ସାହାଯ୍ୟ ଦେବା କଥା ପରେ ପକାଇବା । ତୁମେ ଆଗେ ଆମ ଦେଶରୁ ହଟିଲ । ତୁମେ ଭାରତ ଛାଡ଼ି ଚାଲିଯାଅ । ତା'ପରେ ଆମ ଖୁସିରେ ଆମେ ଯେତିକି ପାରିବୁ, ସାହାଯ୍ୟ କରିବୁ । ବର୍ତ୍ତମାନ ତୁମର ତ ଆମେ ଗୋଲାମ । ଗୋଲାମଙ୍କୁ ପୁଣି କି ସାହାଯ୍ୟ ମାଗୁଛ ? ଆମ ଫାଶ ଆଗେ ଫିଟାଇ ଦିଅ । ଦୁଇ ସମାନଙ୍କ ଲୋକଙ୍କ ଭିତରେ ମିନା ସାହାଯ୍ୟ ଦେବା ନ ଦେବା କଥା ପଡ଼େ ।"

ଏତିକି କହି ଆସି ସେ "ଭାରତ ଛାଡ଼"—ଏହି ଦୁଇଟି ଶବ୍ଦ କହିଦେଲେ । ସେହି ଦୁଇଟି ଶବ୍ଦ ଦେଶର ଏମୁଣ୍ଡରୁ ସେମୁଣ୍ଡ ବାଜିଲା

ଭଲ ଖେଳଗଲା । ସତେ ଯେମିତି ଭାରତ ଆକାଶରେ ଚାରିଆଡ଼େ ଲେଖି ହୋଇଗଲା "ଭାରତ ଛାଡ଼—ଭାରତ ଛାଡ଼" । ଅବସ୍ଥା ଅସମ୍ଭାଳ ହୋଇଯିବ



ବୋଲି ଭାବି ସରକାର ପ୍ରଥମେ ବାପୁଜୀଙ୍କୁ ଗିରଫ କରିନେଲେ । ଦିନେ କି ଦୁଇଦିନ ଭିତରେ ହଜାର ହଜାର ଲୋକ ବନ୍ଦୀ । ଦେଶର ଚାରିଆଡ଼େ ଲୋକେ ମାତିଉଠିଲେ । ଶହ ଶହ ସ୍ଥାନରେ ଗୁଳି ଚାଲିଲା, କେତେ ଲୋକଙ୍କୁ ଫାଶୀକାଠରେ ଝୁଲାଇ ଦିଆଗଲା । ଦେଶରେ ନାହିଁ ନ ଥିବା ଅତ୍ୟାଚାର ହେଲା । ଆମର ଓଡ଼ିଶାରେ ମଧ୍ୟ ବହୁ ଲୋକ ଗୁଳିଚୋଟରେ ଟଳିପଡ଼ିଲେ ।

ମହାତ୍ମା ଗାନ୍ଧୀଙ୍କୁ ଅନ୍ୟମାନଙ୍କଠାରୁ ଅଲଗା କରି ରଖିଥାଆନ୍ତି । ତାଙ୍କ ସାଙ୍ଗରେ ଥିଲେ କସ୍ତୁରବା ଓ ତାଙ୍କର ଅତିପ୍ରିୟ ଶିଷ୍ୟ ମହାଦେବ ଦେଶାଇ । ସେହି ଦୁଇଜଣଯାକ ବନ୍ଦୀ ଅବସ୍ଥାରେ ବାପୁଜୀଙ୍କୁ ଛାଡ଼ିଦେଇ ଏ ସଂସାରରୁ ବିଦାୟ ନେଇଗଲେ ।

ଏହି ସମୟ ଭିତରେ ପୃଥିବୀରେ ଘୋର ଯୁଦ୍ଧ ଲାଗିଥାଏ । ବିଲାତ, ଇଉରୋପ, ରୁଷ, ଜାପାନ, ବ୍ରହ୍ମଦେଶ, ଆଫ୍ରିକାରେ ଯୁଦ୍ଧନିଆଁ ହୁହୁ ହୋଇ ଜଳୁଥାଏ । ଆମେରିକା ମଧ୍ୟ ଲକ୍ଷ ଲକ୍ଷ ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ଆଣି ଯୁଦ୍ଧରେ ଝାସ ଦେଇଥାଏ । ଯେଉଁ ଆଡ଼କୁ ଚାହିଁ, ରକ୍ତର ସୁଅ ଛୁଟିଛି !

ଛଅବର୍ଷ କାଳ ମହାଯୁଦ୍ଧ ଲଗିଲାପରେ ଜର୍ମାନୀ ଓ ଜାପାନ—ଉଭୟେ ହାରିଗଲେ । କିଛିଦିନ ପାଇଁ ପୃଥିବୀ ଟିକିଏ ନିଶ୍ୱାସ ମାରିଲା ।

ଯୁଦ୍ଧ ଶେଷ ହୋଇଆସିଲାବେଳକୁ ବାପୁଜୀ ଜେଲରୁ ଖଲାସ ହେଲେଣି । ଇଂରେଜମାନେ ଦେଖିଲେ, ଏମିତି ଅଶାନ୍ତିରେ କେତେ ଦିନ ଆଉ ଶାସନ ଚାଲିବ ? ଖାଲି ଠେଙ୍ଗା ଦେଖାଇ, ବନ୍ଧୁକମୁନ ଦେଖାଇ କୋଟି କୋଟି ଲୋକଙ୍କୁ ପରାଧୀନ କରି ରଖିହେବ ନାହିଁ । ଗାନ୍ଧୀ ଆଉ କିଛି କରନ୍ତୁ ବା ନ କରନ୍ତୁ, ଲୋକଙ୍କ ମନରୁ ଭୟ ତ କାଢ଼ି ନେଇଛନ୍ତି । ଆଉ ସେମାନଙ୍କୁ ଦବାଇ ରଖି ହେବ କେମିତି ?



[ ଶିଶୁଙ୍କ ପ୍ରତି ଆଦର ]

କଂଗ୍ରେସ ସହିତ ସରକାରଙ୍କ କଥାବାର୍ତ୍ତା ଚାଲିଲା । ବିଲାତରୁ ତିନି ଜଣ ମନ୍ତ୍ରୀ ଆସି ଦିଲ୍ଲୀରେ ବସିରହିଲେ । ବାପୁଜୀ ସେହିସବୁ କଥାବାର୍ତ୍ତାରେ ବରାବର ଯୋଗ ଦେଉଥାଆନ୍ତି । ବହୁତ ଆଲୋଚନା ପରେ ଠିକ୍ ହେଲା, ଆମେ ସ୍ୱରାଜ୍ୟ ପାଇବୁ—ଇଂରେଜ ସରକାର ଏ ଦେଶରୁ ହଟିଯିବେ । ମେଳ ଅନୁସାରେ ସବୁ ଠିକ୍‌ଠାକ ହୋଇଯାଇ ଥାଆନ୍ତା ।

କିନ୍ତୁ ଇଂରେଜମାନେ ଏ ଦେଶରେ ରାଜୁତି ଚଳାଇବା ଆରମ୍ଭରୁ ଯେଉଁ ବିଷମଞ୍ଜି ପୁଞ୍ଜିଦେଇଥିଲେ, ସେହି ବିଷମଞ୍ଜିର ଗଛ ହେଲା ଅସଲ ବାଧା । ଆମ ଦେଶରେ ହିନ୍ଦୁ ମୁସଲମାନ ଉଭୟେ ଥିଲେ । ବିଲାତ ସରକାର ଦେଖିଲେ ଯେ ଏହି ଦୁହିଁଙ୍କୁ ଯଦି ଅଲଗା ଅଲଗା ରଖାଇ ପାରିବା, ଏମାନଙ୍କ ଭିତରେ ବିବାଦ ଲଗିରହିଥିବ । ତେବେ ଏ ଦେଶକୁ ଶାସନ କରିବା ସୁବିଧା ହେବ । ସେମାନେ ବଡ଼ କୌଶଳରେ ହିନ୍ଦୁ ମୁସଲମାନମାନଙ୍କ ଭିତରେ ଭେଦଭାବ ସୃଷ୍ଟି କରିଥାଆନ୍ତି । ଯେତେବେଳେ ସ୍ୱରାଜ୍ୟ ଆନ୍ଦୋଳନ ହେଲା, ପ୍ରଥମରୁ ମୁସଲମାନମାନେ ହିନ୍ଦୁଙ୍କ ସହିତ ଏକ

ହୋଇ ଆନ୍ଦୋଳନ କରୁଥିଲେ । କିନ୍ତୁ କିଛିଦିନ ପରେ ସେମାନଙ୍କୁ ବୁଝାଇ ଦିଆଗଲା ଯେ, ଏ ଦେଶରେ ତ ହିନ୍ଦୁଙ୍କ ସଂଖ୍ୟା ବେଶୀ । ଯଦି ସ୍ୱରାଜ୍ୟ ହୋଇଯିବ, ହିନ୍ଦୁମାନଙ୍କ ହାତରେ ଶାସନକ୍ଷମତା ରହିଯିବ । ଏହି କୁଶିକ୍ଷାର ଫଳ ହେଲା କେତେକ ମୁସଲମାନ ସବୁବେଳେ ସ୍ୱରାଜ୍ୟ ଆନ୍ଦୋଳନର ବିରୋଧ କଲେ । ଶେଷକୁ ଏମିତି ହେଲା ଯେ ସେହିମାନେ ଦାବି କଲେ— 'ଭାରତ ଯଦି ସ୍ୱରାଜ୍ୟ ପାଇବ, ତାକୁ ଦି'ଖଣ୍ଡ କରି ଦିଆଯାଉ । ଖଣ୍ଡେ ନେବେ ମୁସଲମାନମାନେ; ଆଉ ଖଣ୍ଡେ ହିନ୍ଦୁମାନେ ନେବେ ।' ଏହି ପ୍ରଚାରର ଫଳରେ ହିନ୍ଦୁ ମୁସଲମାନମାନଙ୍କ ଭିତରେ ହାଣକାଟ ଲାଗିଲା—ବହୁ ଲୋକ ମଲେ ।

ବାପୁଜୀଙ୍କ ପ୍ରାଣ କାନ୍ଦୁଥାଏ । ସ୍ୱରାଜ୍ୟର କି ସ୍ୱପ୍ନ ସେ ଦେଖୁଥିଲେ ! ହିନ୍ଦୁ ମୁସଲମାନ ଭାଇ ଭାଇ ଭଳି ଚଳନ୍ତୁ ବୋଲି ସେ କେତେକାଳ ଧରି କହି ନ ଆସିଛନ୍ତି ! ଆଜି ପୁଣି ଦେଶ ଦି'ଭାଗ ହେବ—ଖଣ୍ଡେ ନେବେ ମୁସଲମାନମାନେ ! ସେ ଖଣ୍ଡରେ ଯେଉଁ ହିନ୍ଦୁମାନେ ରହିବେ, ସେମାନଙ୍କ ଦଶା କଅଣ ହେବ ? ଅନ୍ୟ ଖଣ୍ଡକରେ ଯେଉଁ ମୁସଲମାନମାନେ ରହିବେ, ସେମାନଙ୍କ ମନରେ କେତେ ଅଶାନ୍ତି ରହିବ ! ଦେଶକୁ ଭାଗ ଭାଗ କରିବା କଥାରେ ମୋଟେ ରାଜି ହୁଅ ନାହିଁ ବୋଲି ସେ କହୁଥାଆନ୍ତି ।

ଶେଷକୁ ତାଙ୍କ କଥା ରହିଲା ନାହିଁ । ଦେଶ ଦି'ଭାଗ ହେଲା । ଖଣ୍ଡେ ନାମ ପାଇଲା 'ପାକିସ୍ତାନ'—ଆଉ ଖଣ୍ଡେ ରହିଲା ଭାରତ ।

ଦେଶ ଦୁଇ ଭାଗ ହେଲାପରେ ମଧ୍ୟ ହାଣକାଟ ବନ୍ଦ ହେଲା ନାହିଁ । ବାପୁଜୀ ନିଜ ଜୀବନକୁ ପାଣି ଛଡ଼ାଇ ଦେଲେ; ଦିଲ୍ଲୀଠାରୁ ବଙ୍ଗଳାଯାଏ ଧାଇଁ-ଧାଇଁ ଲୋକଙ୍କୁ ବୁଝାଇଲେ । ଯେଉଁଠି ହାଣକାଟ ହେଲା, ସେଠି ଯାଇ ନିଜେ ହାଜର ହୋଇ ଯାଉଥାଆନ୍ତି । ଅନେକ ଲୋକଙ୍କ ମୁଣ୍ଡକୁ ରାଗ ଚଢ଼ିଯାଇଥାଏ । ଗାନ୍ଧୀଜୀଙ୍କ କଥା କେତେକଙ୍କ ମନକୁ ପାଇଲା ନାହିଁ । ସେମାନେ ଭାବୁଥାଆନ୍ତି—'ଗାନ୍ଧୀ ମୁସଲମାନମାନଙ୍କ ତରଫ ମାତ୍ର କଥା କହୁଛି । ତାକୁ ମାରିଦେଲେ କଣ୍ଟା ଯିବ ।'



ପ୍ରକୃତରେ ସେ କଅଣ କହୁଥିଲେ, ସେମାନେ ଠିକଏ ହେଲେ ବୁଝିଲେ ନାହିଁ । ନିଜ ନିଜ ଭିତରେ ହଣାକଟା ଲାଗିବାରୁ ତ ଶେଷରେ ଦେଶଟା ଦୁ'ଭାଗ ହେଲା । ଆଉ କ'ଣ ଦେଶଟା ସ୍ୱରାଜ୍ୟ ହେବାଯାଏ କାଳ-ଡକରାଳ, ହାଣକାଟ ଚାଲିଥିବ ?

ଗୋଟାଏ ସମୟରେ ଜୋରରେ ହାଣକାଟ ହେଲା । ବାପୁଜୀ କହିଦେଲେ—"ଦେଖ, ଏ ହତ୍ୟାକାଣ୍ଡ ବନ୍ଦ ନ କଲେ ମୁଁ ଉପବାସ କରି ମରିବି ।" ଏହା କହି ସେ ଉପବାସ ଆରମ୍ଭ କରିଦେଲେ । ଏହା ଫଳରେ ଗୁରିଆଡ଼େ ଥଣ୍ଡା ପଡ଼ିଗଲା ସିନା; କେତେକ ହିନ୍ଦୁଙ୍କର ବାପୁଜୀଙ୍କ ଉପରେ ଭିତରେ ଭିତରେ ରାଗ ରହିଲା ।

ମହାତ୍ମାଜୀ ତାଙ୍କ ସନ୍ଧ୍ୟା-ପ୍ରାର୍ଥନାରେ ବରାବର ବୋଲନ୍ତି—

"ରଘୁପତି ରାଘବ ରାଜାରାମ
ପତିତପାବନ ସୀତାରାମ ।"

ଏଣିକି ମୋ' ମାଗଙ୍କୁ ବୋଲୁଥିଲେ—

"ଈଶ୍ୱର ଆଲ୍ଲା ତେରେ ନାମ
ସବ୍‌କୋ ସନମତି ଦେ ଭଗବାନ ।"

କେତେକ ହିନ୍ଦୁଙ୍କର ମୁଣ୍ଡ ଏତେ ଗରମ ହୋଇଯାଇଥିଲା ଯେ ଏତିକି ବୋଲାହେବାରେ ମଧ୍ୟ ଆପତ୍ତି କଲେ । ପାକିସ୍ତାନରେ ହିନ୍ଦୁମାନଙ୍କୁ ମୁସଲମାନମାନେ ଖୁନ୍ ଜଖ୍ମ ଦେଇ ମାରିଥିବାରୁ ଏମାନେ ତ ଗରମ ହୋଇ ରହିଥାଆନ୍ତି ।

ଶୁଣାଯାଉଥାଏ ଯେ କେତେ ଜଣ ଷଡ଼ଯନ୍ତ୍ର କରୁଛନ୍ତି, ବାପୁଙ୍କୁ ଗୁଳି କରି ମାରିଦେବେ । ସେ ପ୍ରତିଦିନ ସନ୍ଧ୍ୟାବେଳେ ପ୍ରାର୍ଥନା-ସଭାକୁ ଯାଆନ୍ତି । ତାଙ୍କୁ ଜଗିବା ପାଇଁ ସଙ୍ଗରେ ବନ୍ଧୁକଧାରୀ ପୁଲିସ ରହନ୍ତୁ ବୋଲି ପ୍ରସ୍ତାବ ହେଲା । ଏ କଥା ଶୁଣିଲାମାତ୍ରେ ସେ ନାହିଁ କରିଦେଲେ । ତାଙ୍କ ଜୀବନକୁ ରକ୍ଷା କରିବ ବନ୍ଧୁକ ? 'ରାମନାମ' ଯଦି ରକ୍ଷା କରି ନ ପାରିବ, ବନ୍ଧୁକ ସାହାଯ୍ୟରେ ବଞ୍ଚି ଲାଭ କଅଣ ? ଅନେକ ଦିନର ସମୟରେ ପ୍ରାର୍ଥନା ସଭା ଭିତରକୁ ଜଣେ ବୋମା ଫିଙ୍ଗାଇଥିଲା ବାପୁଙ୍କୁ ମାରିବା ପାଇଁ । ତା' ସତ୍ତ୍ୱେ ସେ ଜଗୁଆଳଙ୍କ ପହରାରେ ରହିବେ ନାହିଁ ବୋଲି ମନା କରିଦେଲେ ।

୧୯୪୮ ଜାନୁଆରୀ ୩୦ ତାରିଖ—ସେ ତାଙ୍କ ପ୍ରାର୍ଥନା ସଭାକୁ ଆସୁଥାଆନ୍ତି । ଜଣେ ଯୁବକ ଠିଆହୋଇପଡ଼ି ତାଙ୍କୁ ପ୍ରଣାମ କଲା । ଦୁ'ହାତ

ଯୋଡ଼ି ସେ ଓଲଟ ନମସ୍କାର କଲାବେଳେ ବନ୍ଧୁକ କାଢ଼ି ସେ ଗୁଳିଟା ଗୁଳି ମାରିଦେଲା । ବାପୁଜୀଙ୍କ ପେଟ ଓ ଛାତିରେ ଗୁଳି ବାଜିବାରୁ "ହେ ରାମ" ବୋଲି କହି ସେ ଢଳିପଡ଼ିଲେ । କିଛି ସମୟ ପରେ ତାଙ୍କ ପ୍ରାଣ ଚାଲିଗଲା ।

ଦୁନିଆର ଚାରିଆଡ଼େ ଏ ଖବର ଖେଳିଗଲା । କୋଟି କୋଟି ଲୋକଙ୍କ ଆଖିରେ ଲୁହ । କେହି କେହି କହିଲେ—"ଏଭଳି ବୀର ପୁରୁଷଙ୍କୁ ଏହିଭଳି ମରଣ ସାଜେ ! ଠିକ୍ କଥା, ନ୍ୟାଯ୍ୟ କଥା କହୁ କହୁ ସେ ଗୁଳିମାଡ଼ରେ ଢଳିପଡ଼ିଲା । ସେଇ ସିନା ମୁଣ୍ଡଟେକି କଥା କହୁଥିଲା ।"

ବାପୁଜୀ ଏମିତିକା ଜଣେ ଲୋକ ଥିଲେ ଯେ ଏ ଦେଶର ସବୁ ଶ୍ରେଣୀର ଲୋକେ ତାଙ୍କ ପାଇଁ ଝୁରି ହେଲେ ।

କେଉଁଠି ଦେଖିବ ତ କେତେ ଜଣ ଗରିବ ଲୋକ ବସିଛନ୍ତି । ସେମାନେ ନିଜ ଭିତରେ କଥା ପକାଇଛନ୍ତି—"ଆମ ମନକଥା ବୁଝିପାରିବା ଭଳି ଲୋକ ଆଉ କେହି ନାହାନ୍ତି । ସେ ଏ ଦେଶ ଲୋକଙ୍କୁ ଯେଉଁସବୁ କାମ କର ବୋଲି କହୁଥିଲେ, ସେଥିଭିତରୁ ପ୍ରତ୍ୟେକଟି କାମରେ ଆମ ଗରିବ ଲୋକଙ୍କ ମଙ୍ଗଳ କଥା ହିଁ ଥିଲା ।"

ଆଉ କେଉଁଠି ପଣ୍ଡିତମାନେ ବସି ଆଲୋଚନା କରୁଥାଆନ୍ତି— "କେତେ ଶହ କେତେ ହଜାର ବର୍ଷରେ ଏମିତିକା ଜଣେ ଜଣେ ଲୋକ ଜନ୍ମ ହୁଅନ୍ତି କହିଲ ? ସେ ଲୋକଙ୍କୁ ଭଲ କରି ଲକ୍ଷ୍ୟ କରିଛ ? ମହାତ୍ମା ଗାନ୍ଧୀଙ୍କ ମୁହଁକୁ ଚାହିଁଦେଲେ ଜଣେ ଋଷିଙ୍କ ମୁହଁ ଦେଖିଲାଭଳି ମନେ ହେବ—ଅଥଚ ତାଙ୍କ ହାତକୁ ଚାହିଁଲେ ଜଣାପଡ଼ିବ, ସତେ ଯେପରି କି ଜଣେ ମୂଲିଆର ହାତକୁ ଦେଖୁଛ !"

ଦେଶର ସମସ୍ତେ ପାଠ ପଢ଼ି ଶିକ୍ଷିତ ହୋଇଯାଆନ୍ତୁ ବୋଲି ଯେଉଁ-ମାନଙ୍କର ଇଚ୍ଛା, ସେମାନେ ମୁଣ୍ଡରେ ହାତ ଦେଇ ବସିଯାଇ କହିଲେ—"ଏ ଦେଶରେ କେଡ଼େ ସୁନ୍ଦର ପାଠପଢ଼ା ଧାରା ସେ ଚଳାଇ ଦେଇ ନ ଥିଲେଟି ! ମୌଳିକ ଶିକ୍ଷା ମର୍ଯ୍ୟାଦା କଣ ଏ ଦେଶ ଆଉ ବୁଝିବ ?"

ପୃଥିବୀର ସବୁ ଦେଶର ସରକାର ନିଜ ନିଜର ପତାକା ନୁଆଁଇ ଦେଇ ମହାତ୍ମା ଗାନ୍ଧୀଙ୍କୁ ପ୍ରଣାମ ଜଣାଇଲେ ।

ଜଣେ କହିଉଠିଲେ—"ଆରେ ଭାବୁଛ କଅଣ ? ଦେଖୁନାହିଁ, ମଣିଷ ଜାତିଟା ମୁଣ୍ଡ ନୁଆଁଇ ଦେଇଛି !!" 



କସ୍ତୁରବା

ପ୍ରକାଶ କରଛନ୍ତି
ଜ୍ଞାନମଣ୍ଡଳ ପ୍ରକାଶନୀ
ନମଚୌଢ଼, କଟକ-୨

ଛାପିଛନ୍ତି :
ରାଷ୍ଟ୍ରଭାଷା ସମବାୟ ପ୍ରେସ
ରାଷ୍ଟ୍ରଭାଷା ରୋଡ଼, କଟକ-୧

ମୂଲ୍ୟ ପଚାଶ ପଇସା

ଗାନ୍ଧୀ-ଶତବାର୍ଷିକୀ ଉପଲକ୍ଷେ ପଚିଶ ପଇସା



କ୍ୟାସ୍ ମେମୋ No 1

# "ମହାତ୍ମା ଗାନ୍ଧୀ"

(ଲେଖକ—ବିନୋଦ କାନୁନ୍‌ଗୋ)

ମୂଲ୍ୟ ପଚ୍ଚିଶ ପଇସା

ଗାନ୍ଧୀ ଶତବାର୍ଷିକୀ ଉପଲକ୍ଷେ ପଚିଶ ପଇସା

ନେବା ବ୍ୟକ୍ତିଙ୍କ ନାମ

ଠିକଣା

| ସଂଖ୍ୟା | ଟ. | ପ. |
|---|---|---|
| 1 | 0 | 25 |

ତାରିଖ 1/1/68

ବିକ୍ରେତା [signature]